

ନାତି ଆଶୁତୋଷ ଦ୍ୱାରା ଅଙ୍କିତ ତାତାଙ୍କ ଆଲେଖ୍ୟ

# ଉତ୍ତରାୟଣ

ଚନ୍ଦ୍ରଶେଖର ରାଓ

୧୯୪୦-୨୦୦୪

 

ଓଡ଼ିଶା ଲଳିତକଳା ଏକାଡ଼େମୀ
ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଏସୋସିଏସନ୍ ଅଫ୍ ଓଡ଼ିଶା
ORISSA LALIT KALA AKADEMI
WORKING ARTISTS ASSOCIATION OF ORISSA

ଉତ୍ତରାୟଣ
ଚନ୍ଦ୍ରଶେଖର ରାଓ
୧୯୪୦-୨୦୦୪

ସଂପାଦନା
ଦିନନାଥ ପାଠୀ
ଶିବରାମ ପାତ୍ର
ଡି.ଏନ୍. ରାଓ
ଚନ୍ଦ୍ରମଣି ବିଶ୍ୱାଳ
ରାମହରି ଜେନା

କଳା ସଂପାଦନା
ଅସୀମ ବସୁ

ପ୍ରକାଶକ
ସୌଭାଗ୍ୟ ପାଠୀ
ସହସଚିବ
ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଏସୋସିଏସନ୍
ଅବନ୍ତୀ- ଇ ୪୯/୧୩୮୬ ଭୀମଟାଙ୍ଗୀ
ଭୁବନେଶ୍ୱର : ୭୫୧ ୦୨୦

ପ୍ରକାଶ କାଳ : ୧୪ ଫେବୃୟାରୀ ୨୦୦୪

ପ୍ରଚ୍ଛଦ ସୌଜନ୍ୟ
ନିତ୍ୟାନନ୍ଦ ମିଶ୍ର
ଗ୍ରାଫ୍‌ଟେକ୍ ପ୍ରାଇଭେଟ୍ ଲିମିଟେଡ୍
ଶ୍ରୀପୁରୀରେଣ୍ଣୁ, ବ୍ରହ୍ମେଶ୍ୱର ପାଟଣା, ଭୁବନେଶ୍ୱର

ମୁଦ୍ରଣ
ଦିବ୍ୟପ୍ରକାଶନୀ
ଦିବ୍ୟବିହାର, ଭୁବନେଶ୍ୱର - ୨ .
ଫୋନ୍ :୨୩୪୦୧୩୬

# ଯେଉଁମାନଙ୍କ ଶ୍ରଦ୍ଧାଞ୍ଜଳିରେ ଉତ୍ତରାୟଣ ସମୃଦ୍ଧ



ଆବିର୍ଭାବ : ୧୬-୯-୧୯୪୦ଭାଦ୍ରବ ଶୁକ୍ଳ ପୂର୍ଣ୍ଣମୀ
ତିରୋଧାନ : ୩-୨-୨୦୦୪ ମାଘ ଶୁକ୍ଳ ତ୍ରୟୋଦଶୀ

Go, my breath, to the immortal breath.
Then may this body end in ashes.
Remember, O my mind,
The deeds of the past,
Remember the deeds,
Remember the deeds !

The Vedic Experience *Mantramanjari*
*Raimundo Panikkar*



ଛାତ୍ର ଅବିନାଶ ଦ୍ୱାରା ଅଙ୍କିତ ଗୁରୁଙ୍କ ଆଲେଖ୍ୟ

If death is ugly, that means your whole life has been a wastage. Death should be peaceful acceptance, a loving entry into the unknown, a joyful goodbye to old friends, to the old world,
There should not be any tragedy in it.

*-Osho*

ଶୁଭସ୍ମୃତି ହିଁ ପ୍ରକୃତ ଶ୍ରଦ୍ଧାଞ୍ଜଳି - ଶ୍ରୀଅରବିନ୍ଦ

## ପ୍ରାକ୍‌ଭାଷ

ଚିତ୍ର ସମର୍ପିତ ଚିତ୍ରଶିଳ୍ପୀ ଚନ୍ଦ୍ରଶେଖରଙ୍କ ଆକସ୍ମିକ ବିୟୋଗରେ ଓଡ଼ିଶା ସାଂପ୍ରତିକ କଳା ପ୍ରବାହର ତୃତୀୟ ପିଢ଼ୀର ଜଣେ ସୁଦକ୍ଷ ଚିତ୍ରଶିଳ୍ପୀଙ୍କୁ ହରେଇଲା, ଓଡ଼ିଶା ଲଳିତକଳା ଏକାଡ଼େମୀ ତା'ର ଜଣେ ମର୍ମଜ୍ଞ ସମର୍ଥକ, ୱାର୍କିଙ୍ଗ୍ ଆର୍ଟିଷ୍ଟ୍ସ୍ ଏସୋସିଏସନ୍(ୱା) ତା'ର ଜଣେ ପ୍ରତିବଦ୍ଧ ଅଧ୍ୟକ୍ଷ ଆଉ ଆମେ ଆମର ପରମ ବନ୍ଧୁଙ୍କୁ ହରେଇଲୁ । ତାଙ୍କ ଅବର୍ତ୍ତମାନରେ ରାଓଙ୍କ ପରିବାର ଅକଥନୀୟ ଦୁର୍ଦ୍ଦିନରେ ସଢୁଛନ୍ତି । ଚନ୍ଦ୍ରଶେଖର ଗଂଜାମ ଜିଲ୍ଲାର ଗୋଟିଏ ସମ୍ଭ୍ରାନ୍ତ ଦୋରା ପରିବାରରୁ ଆସିଥିଲେ । ବାପାମା'ଙ୍କର ଆଠଟି ସନ୍ତାନ ଭିତରେ ସେ ଥିଲେ ପ୍ରତିଭାରେ ସମସ୍ତଙ୍କଠାରୁ ଉଜ୍ଜ୍ୱଳ, ରୂପରେ ଗୁଣରେ ଚନ୍ଦ୍ରପରି ସ୍ନିଗ୍ଧ ଓ ଚିତ୍ର ସାଧନାରେ ସଦା ଚଳଚଂଚଳ ଓ କ୍ରିୟାଶୀଳ । ଖଲ୍ଲିକୋଟ କଳାବିଦ୍ୟାଳୟରୁ ଭାରତୀୟ ଚିତ୍ରକଳାରେ ଡିପ୍ଲୋମା ପାଇଲା ପରେ ସରକାରୀ ଚାକିରୀର ବିଭିନ୍ନ ପାହାଚ ଦେଇ ଶେଷରେ ଓଡ଼ିଶା ହସ୍ତଶିଳ୍ପ ବିଭାଗରୁ ଡେପୁଟି ମ୍ୟାନେଜର ଭାବେ ଚାକିରୀରୁ ଅବସର ନେଲେ । ସରକାରୀ ଚାକିରୀର ଜଂଜାଳ ଓ ସ୍ଥବିରତା ତାଙ୍କ ଶିଳ୍ପୀପ୍ରାଣକୁ ଅସ୍ଥିର କରି ରଖୁଥିଲା । ଶିଳ୍ପୀଟିଏ ହେବା ଲକ୍ଷ୍ୟନେଇ ସେ ତାଙ୍କର ଯେଉଁ କଳାଯାତ୍ରା ବିଗତ ଶତାବ୍ଦୀର ଷାଠିଏ ଦଶକର ପ୍ରାରମ୍ଭରୁ ଆରମ୍ଭ କରିଥିଲେ ତାହା ଏକବିଂଶ ଶତାବ୍ଦୀର ପ୍ରାରମ୍ଭ ଯାଏଁ ଅବ୍ୟାହତ ରହିଥିଲା । ମୃତ୍ୟୁ ଏମିତି ଅଚାନକ ଆମ ଗହଣରୁ ତାଙ୍କୁ ଏତେ ଶୀଘ୍ର ଛଡ଼େଇ ନେଇଯିବ ଏକଥା କାହାର କଳ୍ପନାରେ ନ ଥିଲା । ମୃତ୍ୟୁର ଲୀଳା ଅତର୍କିତ ।

ଖଲ୍ଲିକୋଟରେ ଛାତ୍ର ଥିବାବେଳେ ଚନ୍ଦ୍ରଶେଖର ତାଙ୍କର ଦୁଇଜଣ ଅଧ୍ୟାପକଙ୍କ ଚିତ୍ରଣ ଶୈଳୀରେ ଉଦ୍‌ବୁଦ୍ଧ ହେଇଥିଲେ । ଜଣେ ଥିଲେ ଭାରତୀୟ ଚିତ୍ରକଳା ବିଭାଗର ମୁଖ୍ୟ ଅଜିତକେଶରୀ ରାୟ ଓ ଅନ୍ୟ ଜଣେ କାରୁକଳା ବିଭାଗର ଅଧ୍ୟାପକ ରବିନାରାୟଣ ନାୟକ । ଅଜିତକେଶରୀ ପ୍ରବାଦ ଚିତ୍ରପୁରୁଷ ନନ୍ଦଲାଲଙ୍କ ସୁଯୋଗ୍ୟ ଶିଷ୍ୟ ହୋଇଥିଲେ ମଧ୍ୟ ସେ କଳାମାନସିକତାରେ ଥିଲେ ଅଣଶାନ୍ତିନିକେତନୀୟ । କେବଳ ରବିନାରାୟଣ ହିଁ ସେତେବେଳେ ଯିମିତି, ଏବେ ବି ସିମିତି ଶାନ୍ତିନିକେତନୀ ମହକରେ ଉଦ୍‌ବେଳିତ । ଚନ୍ଦ୍ରଶେଖର ବେଶି ମାତ୍ରାରେ ରବିନାରାୟଣଙ୍କର ଧୌତଚିତ୍ର, ଲେପଚିତ୍ର ଓ ରେଖାଚିତ୍ର ଦ୍ୱାରା ଅନୁପ୍ରାଣିତ ହେଇଥିଲେ । ଓଡ଼ିଶା ଲଳିତକଳା ଏକାଡ଼େମୀର ସର୍ବପ୍ରଥମ ଚିତ୍ରପ୍ରଦର୍ଶନୀରେ ପୁରସ୍କୃତ ଚିତ୍ର 'ବିଷପୀୟୂଷ' ହିଁ ଏହାର ପ୍ରମାଣ । ସେ କିନ୍ତୁ ସେଇଠି ଅଟକି ନଯାଇ ସେ ସମୟରେ ସର୍ବଭାରତୀୟ ଚିତ୍ରଧାରାରେ ଯାହା ବିଲକ୍ଷଣ ସଂଗଠିତ ହେଉଥିଲା, ସେଥିପ୍ରତି ସଚେତନ

ରହି ନିଜ ଚିତ୍ରଣଧାରାର ପରିବର୍ତ୍ତନ ଓ ବିକାଶ ଘଟେଇଥିଲେ । ଚିତ୍ରରେ ତାଙ୍କ ରେଖା ବିନ୍ୟାସ ଧୀରେଧୀରେ ଗାଢ଼ ଓ ରୂପଯୋଜନା ସରଳ ଓ ସାବଲୀଳ ହେବାକୁ ଲାଗିଲା । ଭୁବନେଶ୍ୱରରେ ଅବସ୍ଥାନ ଓ 'ଓ୍ୱା' ସହିତ ସଂପୃକ୍ତି ତାଙ୍କ ଚିତ୍ରଧାରାକୁ ଆହୁରି ସମୃଦ୍ଧ କରିଦେଇ ତା'ର ପରିପ୍ରେକ୍ଷିତ୍ୱକୁ ଆହୁରି ବ୍ୟାପକ କରିଦେଲା । ସେ ଗୁଜରାଟୀ ଚିତ୍ରଣଶୈଳୀର ପ୍ରସାରିତ ଓ ବିସ୍ତାରିତନୟନ, ରାଜସ୍ଥାନୀ ଓ ପାହାଡ଼ି ରୂପଯୋଜନାର ବର୍ଣ୍ଣମାଧୁରୀ ଦେହସଂଗତି, ମୋଗଲ ପରଂପରାର ରୈଖିକ ସ୍ଥାପତ୍ୟ ଏବଂ ସର୍ବୋପରି ଆନ୍ଧ୍ର ଓ ଓଡ଼ିଶା କଳାଧାରାର ରେଖା, ଢଙ୍ଗ, ଠାଣି, ସମଭଙ୍ଗ, ତ୍ରିଭଙ୍ଗ, ବିଷମଭଙ୍ଗ ଓ ଅତିଭଙ୍ଗର ଚମତ୍କାରିତାକୁ ନିଜର ଚିତ୍ରାତ୍ମକତାରେ ନ୍ୟାସ କରିବାରେ ସଫଳ ହେଇପାରି ଏକ ସର୍ବଜନାଦୃତ ସ୍ୱକୀୟ ଚିତ୍ରଶୈଳୀ ଗଢ଼ିପାରିଥିଲେ । ଏହି ଶୈଳୀର ବ୍ୟାକରଣ ଯଦିଓ ପାରଂପରିକ ଥିଲା, ତା'ର ଭାଷା ଥିଲା ଆଧୁନିକ । ତାଙ୍କ ଚିତ୍ରରେ ରେଖା ଥିଲା ମନ୍ତ୍ରଭଳି ଉଚ୍ଚାରିତ ଓ ସ୍ପଷ୍ଟ । ବର୍ଣ୍ଣର ଔଜ୍ଜ୍ୱଲ୍ୟ ଓ କାବ୍ୟିକତା ଚିତ୍ରରେ ପ୍ରାଣ ଭରିଦେଉଥିଲା । ତାଙ୍କ ଚିତ୍ରରେ ଯାମିନୀଙ୍କ ରୂପବିଦ୍ୟାର ସ୍ୱଳ୍ପାଡ଼ମ୍ବର, ନନ୍ଦଲାଲଙ୍କ ଧୌତଚିତ୍ରର କୁହୁକ, ଓଡ଼ିଶା ଓ ଆନ୍ଧ୍ର କଳାର ବାକ୍‌ବିଳାସ ଏକା ସାଙ୍ଗରେ ପାଇହେଉଥିଲା ।

ଚନ୍ଦ୍ରଶେଖର ଜଣେ ଛାତ୍ରବତ୍ସଳ ଶିକ୍ଷକ ଓ ହସ୍ତଶିଳ୍ପ ଡିଜାଇନର ଭାବେ ଓଡ଼ିଶାରେ ନିଜକୁ ପ୍ରତିଷ୍ଠା କରିବାରେ ସମର୍ଥ ହେଇପାରିଥିଲେ । ଅଗ୍ରଣୀ ବେସରକାରୀ କଳା ଅନୁଷ୍ଠାନ ଓ୍ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଏସୋସିଏସନ(ଓ୍ୱା)ର ଅଧ୍ୟକ୍ଷ ଦାୟିତ୍ୱରେ ରହି ଓଡ଼ିଶାର ଆଧୁନିକ କଳା ଆନ୍ଦୋଳନ ସହିତ ସେ ଘନିଷ୍ଠ ଭାବେ ସଂପୃକ୍ତ ଥିଲେ । 'ଓ୍ୱା'ର ଜାତୀୟସ୍ତରରେ ଚିତ୍ର ପ୍ରଦର୍ଶନୀ ଓ କଳା ପ୍ରକାଶନ କାର୍ଯ୍ୟକ୍ରମରେ ମଧ୍ୟ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା ।

କଳା ଓ ସଂସ୍କୃତି କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ଥିବା ଓଡ଼ିଶାର ବରପୁତ୍ରଙ୍କ ସ୍ମୃତିରକ୍ଷା ପାଇଁ କିଛି ବର୍ଷ ତଳେ ସଂସ୍କୃତି ବିଭାଗ ପକ୍ଷରୁ ଏକ ଯଥାର୍ଥ ସ୍ମରଣିକା ପ୍ରକାଶନ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଥିଲା । ଆମେ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର କେତେଜଣ ସହଯୋଗୀଙ୍କ ଉଦ୍ୟମ ଫଳରେ ସ୍ୱର୍ଗତ କେଦାରନାଥ ମହାପାତ୍ରଙ୍କ ସ୍ମରଣରେ ଗୋଟିଏ ପୁସ୍ତକ ଓଡ଼ିଶା ସରକାରଙ୍କ ଛାପାଖାନାରେ ମୁଦ୍ରିତ ହେଇ ପ୍ରକାଶିତ ହେଇଥିଲା । ତା'ପରେ ପ୍ରଫେସର ପ୍ରହ୍ଲାଦ ପ୍ରଧାନ ଏବଂ ଗବେଷକ ଚକ୍ରଧର ମହାପାତ୍ରଙ୍କ ଉଦ୍ଦେଶ୍ୟରେ ମଧ୍ୟ ପୁସ୍ତକ ପ୍ରକାଶ ପାଇଥିଲା । ଏହି ପରଂପରାର ଅନ୍ୟତମ ଉଦ୍‌ଯୋଗୀ ପଣ୍ଡିତ ନୀଳମଣି ମିଶ୍ରଙ୍କ ବେଳକୁ ତାହା ସଂପୂର୍ଣ୍ଣ ବନ୍ଦ ହେଇଯାଇଥିଲା ।

ଆମେ ଏବେ ଲଳିତକଳା ଏକାଡ଼େମୀ ଆନୁକୂଲ୍ୟରେ ନିଶ୍ଚିହ୍ନ ହୋଇଯାଇଥିବା ସେହି ମହନୀୟ ପରଂପରାକୁ ଉଜ୍ଜୀବିତ କରିବାକୁ ଉଦ୍ୟମ ଆରମ୍ଭ କରିଛୁ । ଆମର ଏହି ଉଦ୍ୟମ 'ଓ୍ୱା'ର ଆର୍ଥିକ ସହାୟତା ତଥା ଚନ୍ଦ୍ରଶେଖରଙ୍କ ବନ୍ଧୁମାନଙ୍କ ବଦାନ୍ୟତା ଯୋଗୁଁ ସମ୍ଭବପର

ହୋଇପାରିଛି । ଏଣୁ ଏହି ଅବସରରେ ଲଳିତକଳା ଏକାଡ଼େମୀର ସଚିବ ଅଧ୍ୟାପକ ଚନ୍ଦ୍ରମଣି ବିଶ୍ୱାଳ, ପ୍ରକାଶନ ଅଧିକାରୀ ହରେକୃଷ୍ଣ ରାଉତ, ଲଳିତକଳା ଏକାଡ଼େମୀର ଅନ୍ୟାନ୍ୟ କର୍ମକର୍ତ୍ତା, 'ଓ୍ୱା'ର ନବ ନିର୍ବାଚିତ ଅଧ୍ୟକ୍ଷ ଚିତ୍ରଶିଳ୍ପୀ ଶିବ ପାଣିଗ୍ରାହୀ, ସାଧାରଣ ସଂପାଦକ ଓ ଖଲ୍ଲିକୋଟ କଳାମହାବିଦ୍ୟାଳୟର ଅଧ୍ୟକ୍ଷ ଡି.ଏନ୍.ରାଓ, ଚିତ୍ରଶିଳ୍ପୀ କାଶୀନାଥ ଜେନା, ଚନ୍ଦ୍ରଶେଖରଙ୍କ ପ୍ରାକ୍ତନ ଛାତ୍ର ଓ ଶିଳ୍ପୀ ରାମହରି ଜେନା, ବନ୍ଧୁ ଅଧ୍ୟାପକ ଶିବରାମ ପାତ୍ର, 'ଓ୍ୱା'ର ସହସଚିବ ସୌଭାଗ୍ୟ ପାଠୀ , କେନ୍ଦ୍ର ଏକାଡ଼େମୀର ପ୍ରୋଗ୍ରାମ ଅଫିସର ଡକ୍ଟର୍ ଦିଲୀପ କୁମାର ତ୍ରିପାଠୀ, ବରିଷ୍ଠ ଶିଳ୍ପୀ ଅସୀମ ବସୁ, ଶ୍ରୀପୁରୀରେଣୁର ଆମ ସମସ୍ତଙ୍କ ନିତ୍ୟାନନ୍ଦ ମିଶ୍ରଭାଇନାଙ୍କ ଯୋଗୁଁ ସଫଳ ହୋଇଛି ।

ଚନ୍ଦ୍ରଶେଖରଙ୍କ ପରିବାର, ବିଶେଷକରି ଚନ୍ଦ୍ରଶେଖରଙ୍କ ଜାମାତା, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର କଳାଇତିହାସ ଅଧ୍ୟାପକ ପ୍ରଦୋଷ ମିଶ୍ର, ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ଲେଖା ପଠେଇଥିବା ଶିଳ୍ପୀ, କବି ଓ ଲେଖକବନ୍ଧୁ, ପ୍ରିୟମ୍ବଦା, ରମାକାନ୍ତ ତଥା ଦିବ୍ୟ ମୁଦ୍ରଣୀର ସଂଚାଳକ ବିଭୁପ୍ରସୂନ ଦାସଙ୍କ ଉତ୍ସାହ ଓ ସହଯୋଗ ପାଇଁ ମୋର କୃତଜ୍ଞତା ଜଣାଉଛି । ମୁଁ ଆଶା କରୁଛି ଏହି ପରଂପରାକୁ ବଂଚେଇ ରଖିବା ପାଇଁ ସରକାର ତଥା ବଦାନ୍ୟ ବ୍ୟକ୍ତିଗଣ ଏକାଡ଼େମୀମାନଙ୍କୁ ଆର୍ଥିକ, କାୟିକ ଏବଂ ମାନସିକ ସାମର୍ଥ୍ୟ ଦେବେ ।

ଏହି ଅବସରରେ ଚନ୍ଦ୍ରଶେଖରଙ୍କ ଧର୍ମପତ୍ନୀ ଭାଗ୍ୟଲକ୍ଷ୍ମୀ, କନ୍ୟା ସଙ୍ଗୀତା, ବନ୍ଦିତା, ନନ୍ଦିତା, ପୁତ୍ର ତାରାଶଙ୍କର, ଗିରିଜାଶଙ୍କର ତଥା ତାଙ୍କ ପରିବାରର ଅନ୍ୟ ସଦସ୍ୟମାନଙ୍କୁ ଏ ଦୁଃଖ ସହ୍ୟ କରିବାକୁ ଭଗବାନ ସହାୟ ହୁଅନ୍ତୁ ବୋଲି ଗୁହାରି ଜଣାଉଛି ।

ଦିନନାଥ ପାଠୀ

ସଭାପତି

ଓଡ଼ିଶା ଲଳିତକଳା ଏକାଡ଼େମୀ

୧୪ ଫେବୃଆରୀ ୨୦୦୪

ଭୁବନେଶ୍ୱର

## ସୂର୍ଯ୍ୟ ମିଶ୍ର

### ବିଦାୟୀ ଚିତ୍ରୀ !

ସ୍ୱର୍ଗଦ୍ୱାରରେ ଶେଷ ହୋଇଥିବ ପ୍ରେତକୃତ୍ୟ ।
ସମୁଦ୍ରବାଲିରେ ତିଆରି ଥିବ ଏକ ସଂକ୍ଷିପ୍ତ ଭୂଗୋଳ,
ତୁମ ପ୍ରିୟ-ପରିଜନ-ସତୀର୍ଥଙ୍କ ଗହଳଚହଳ ।
ସବୁଥିରେ ଛାଇଯାଇଥିବ ମରଣର ମୌନ ଅଭିସାର ।

ଲୁହ-ରକ୍ତ-ହାଡ଼-ମାଂସର ସତେଜ ଦେହ ତୁମର
କେଇ ମିନିଟ୍‌ରେ ମିଶିଯାଇଥିବ ଅନଳ ଛାତିରେ ।
ସ୍ୱପ୍ନ ଏବଂ ଦୀର୍ଘଶ୍ୱାସ,
ଅନେକ ସଂପର୍କ ଲୀନ ହୋଇ ଯାଇଥିବ
ମୃତ୍ତିକା ଓ ମହାଶୂନ୍ୟତାରେ ।

ଏକାଂତରେ ତୁମେ ଖୁବ୍ ଚିତ୍ର ଆଂକିଥିଲ
ହସକାଂଦ ବିଷାଦ ଉଲ୍ଲାସ ପରି ଅନୁଭବର
ନିଃଖର୍ବ ମାଣିକ୍ୟ ମୋତି ଏକାକାର କରି,
ସେସବୁରେ ତେଜ ଆଉ ପ୍ରାଣ ଯୋଡ଼ିଥିଲ ।
ଆପଣା ଲୁହେ ଧୋଇ ସେସବୁକୁ ସ୍ୱଚ୍ଛ କରିଥିଲ ।
ରକ୍ତଝରା ଜୀବନରୁ ରଂଗ ଆଣି ସେସବୁରେ ବେଶ୍ ମାଖିଥିଲ ।

ସବୁତକ ଚିତ୍ର ଆଜି ପ୍ରତୀକ ପାଲଟି,
ବରଫ-ହେମାଳ ଆମ ନିରବତା ଭାଂଗି
ତୁହାଇ ତୁହାଇ ଯାହା ସ୍ମରଣ କରାଏ
ବଂଚିବାର ଅର୍ଥ-ଅର୍ଥାଂତର ।

ତୁମେ ଯାହା ଫେରିଗଲ ମୁଠାମୁଠା
ଅବଶୋଷ ନେଇ ପୁଣି ଆଂକିବାର ।
ଯଦିଓ ତୁମେଇ ଜାଣ ଅତୁଳ ଅନନ୍ୟ
ତୁମ ଚିତ୍ରସବୁ ରହିବେ ଭାସ୍ୱର ।

ଚିତ୍ରୀ! ତୁମେ ଏବେ ଏକ ସ୍ଥିର ଚିତ୍ର ।
ଦେଖିବାକୁ ଲୋଡ଼ା ଯାହା ସ୍ମୃତିର ଆଖିରେ ।

ସେ ଚିତ୍ର ପଛରେ ଏବେ ସମୁଦ୍ରର ଶୋଷ ।
ପୃଷ୍ଠା ପୃଷ୍ଠା ଅଲିଖିତ ଇତିହାସ ।
ଜୀବନ-ଦରିଆ ଲଂଘିନାର ଚିତ୍ରିତ ଦୁଃସାହସ ।

ବିଦାୟ ଚିତ୍ରୀ ! ତୁମେ ଏବେ ପାଲଟି ପ୍ରତୀକ ।
ବାରମ୍ବାର କାନେ କୁହ
ଜୀବନଠୁଁ ଜୀଇଁବାଟା
ବେଳେବେଳେ ନିଶ୍ଚୟ ଅଧିକ !

■

## ଦଣ୍ଡପାଣି ମିଶ୍ର

### ଆକାଶରୁ ଚନ୍ଦ୍ର ଗଲା ହଜି

କେଉଁଦିନ କି ମୁହୂର୍ତ୍ତେ ପରା
ଛୁଇଁଥିଲ ତୁମେ ଆସି ଧରା
ହସିଥିଲା ସେଦିନ ଧରଣୀ
ଆଜି କିନ୍ତୁ କାହିଁ ଅଛ,
ଖାଲି କରୁଣ କାହାଣୀ

ହେ ! ଚନ୍ଦ୍ରଶେଖର
ତୁମେ ତ ଅମର
ତୁମ କଳା ରହିବ ଅକ୍ଷର
ଦଶଦେଶେ ତମ ସ୍ମୃତି
ହୋଇବ ଭାସ୍ୱର

ତମ ଚିତ୍ର ତମଠାରୁ
ଲାଗେ ମୋଲାୟମ୍,
ହଳଦୀ, ନୀଳ, ନାଲିରଙ୍ଗ
ସବୁ ଲାଗେ ଅନୁପମ

କଳା ଆକାଶରୁ ସିନା ଚନ୍ଦ୍ର ଗଲା ହଜି
କୋଟି କଳାକାର ଚିର ଆକାଶରେ
ତୁମେ ଏବେ ରହିଛ ବିକଶି ॥

## ମୋନାଲିସା ଜେନା

### ମରଣର ମାୟା

ଜୀବନର ଏତେ ପାଖରେ ମରଣ
ଅମାନିଆ ଛାଇପରି, ଯେହ୍ନେ ଚନ୍ଦ୍ର ଓ କଳଙ୍କ ।

ମାନ, ଅହଂକାର, ଈର୍ଷା ଅପବାଦେ
ସରି ସରି ଯାଏ ପ୍ରେମର ଗରିମା ।
ତୁମ ଅସୁସ୍ଥ ସମ୍ବାଦରେ ଯେମିତି
ଭସ୍ମୀଭୂତ ଜୀବନରେ ବଞ୍ଚିବାର ମାୟା !

ମୋର ଆୟୁଷରେ ଯଦି ଉଜ୍ଜ୍ୱଳି ଉଠନ୍ତା
ତୁମର ମହନୀୟ ବଳକା ଜୀବନ !
ତୁମକୁ ପୁଣିଥରେ ଭେଟିବାର କାମନାରେ
ବିତିଯାଏ କାରୁଣ୍ୟର ରାତି ଆଉ ଦିନ ।

ଭଲପାଇବା ପାଇଁ ଗୋଟାଏ ଜୀବନ
ନିଅଣ୍ଟିଆ ପଡ଼େ
ସହିବାକୁ ପଡ଼େ
ଯମର ଯନ୍ତ୍ରଣା ।

ହାୟ ! ଏବେ ଭଲପାଇବା ତୁମକୁ ଛୁଇଁ ଯାଏ
ଶବାଧାରର କୋମଳ ଫୁଲର ପାଖୁଡ଼ା ପରି
ସାହାନାଇର କରୁଣ ଶୀତଳତା ପରି
ଚନ୍ଦନ ଧୂପ ଆଉ ଅଶ୍ରୁସିକ୍ତ ଆଖି ପରି

ଈଶ୍ୱରଙ୍କୁ ଭେଟିବାର ଦୁର୍ବାର ଇଚ୍ଛାରେ
ତୁମେ ବିଲୀନ ହୁଅ ମହାଶୂନ୍ୟ ଘନନୀଳିମାରେ
ଏବଂ
ତୁମ ମୃତ୍ୟୁ ସହ
ମରେ ମୋର ବଞ୍ଚିବାର ମୋହ ।



## ଦିଲ୍ଲୀପ କୁମାର ଆଚାର୍ଯ୍ୟ

### ସ୍ମୃତିର ସୌରଭ

କଳା ପଥେ ଅନ୍ଧକାର ଦୂର କରି
ଚହଟାଇ ଦିବ୍ୟ ଚନ୍ଦ୍ରାଲୋକ
ଗଢ଼ିଦେଲ ବେଳାଭୂମି ପରେ
ଶତ ଶତ ନୂତନ କୋଣାର୍କ

ଅମାରାତି ଯାଇଅଛି ପାହି
ସୂର୍ଯ୍ୟାଲୋକ ପଡ଼େ ଚତୁର୍ଦ୍ଦିଗେ
କଳାରେ ଯେ ଭରିଲେ ଜୀବନ
ନାହାନ୍ତି ସେ ଆଉ ଇହଲୋକେ

ହେ ବରେଣ୍ୟ ଉତ୍କଳ ସନ୍ତାନ
ତୁମ କଳା କାରୁକାର୍ଯ୍ୟ
ରହିଥିବ ଯାବତ ଚନ୍ଦ୍ରାର୍କେ
ସ୍ୱର୍ଣ୍ଣାକ୍ଷରେ ହେବ ଲିପିବଦ୍ଧ

ଅମର୍ତ୍ତ୍ୟ ପଥର ଯାତ୍ରୀ
ହେ ! ଚନ୍ଦ୍ରଶେଖର
ତୁମେ ମୋର ପ୍ରୀତିର କବିତା
ତୁମ ପଦେ ମୋର ନମସ୍କାର ।



## କାଶୀନାଥ ଜେନା

### ଆଦରର ଡାକ

'କାଶୀନାଥ' 'କାଶୀନାଥ'
ପଡୁଥିଲା ହୁରି
ଆଉ କି ଶୁଣିବି ନାହିଁ
ସେ ମଧୁର ପ୍ରୀତିଭରା ଡାକ
ଆଉ ତମ କଅଁଳ ବଚନ
ତୁମତୁଣ୍ଡୁ ଦିନେ ଯାହା
ପଡୁଥିଲା ଝରି !

ମାଘର୍ କାଲୁଆ ଜାଡ଼େ
ଶୀତଳ ପୃଥିବୀ
ଶୋଇ ଶୋଇ ଯେବେ ମୁହିଁ
ଘନନିଶା କୋଳେ
ଉଷୁମ ଖୋଜୁଥିଲି ରେଜେଇ ଭିତରେ
ତୁନିତାନି ଆଦରିଲ
ମାଟିମା'ର କୋଳ
ଜୁଇର ଲେଲିହାନ ଶିଖା
ଉଜ୍ଜ୍ୱଳ ବକ୍ଷରେ
ଶୋଇଗଲ ସୁନାପୁଅପରି
କାଳଜୟୀ ହେଲ
ଶୀତ ଖରା ବର୍ଷା ଆଉ ଯେତେ ଅନୁଭବ
ସବୁକୁ ପାଶୋରି
ଏକାକାର କରି ।

ଖଲିକୋଟ ବିଦ୍ୟାଳୟ ମୋ ଭବିଷ୍ୟ ବିଚାର
ଅରଜିବି କଳାବିଦ୍ୟା
ମନେକରି ଅଭିଳାଷ,
ବୃତ୍ତିରେ ମୁଁ ହେବି କଳାକାର ।

ଭେଟିଲି ଦିନନାଥ, ଚନ୍ଦ୍ରଶେଖର
ଅନ୍ତରଙ୍ଗ ସହଚର
ଦିଗହରା ସେଠି ମୁହିଁ ପାଇଥିଲି ଦିଗ
ତୃଷାର୍ତ୍ତ ଲଭଇ ଯେହ୍ନେ ସରୋବର ସଙ୍ଗ ।

ସାଥିହୋଇ ଗଢ଼ିଥିଲେ କ୍ଷୁଡ଼ିଓ 'ଲେଖିକା'
ଶିଳ୍ପୀ ଜୀବନର ସ୍ୱପ୍ନିଳ ବିଥୀକା
ଆଶା, ନିରାଶା ପୁଣି କେତେ ଝଞ୍ଜା
ଆଙ୍କୁଥିଲେ ଛବି
କରୁଥିଲେ ଶିଳ୍ପ ଆଲୋଚନା
ଯାହା ଥିଲେ ଆମେ ଅନୁଭବି !

ମଜାରେ ମଜାରେ ଚୋରିକଲି ଦିନେ
ତମ କନ୍ୟାମୁଣା ପଇସା ସାଙ୍ଗରେ
ତମେ ତ୍ରସ୍ତ ହେଲ
ଦୁନିଆ ଖୋଜିଲ
ସବୁ କିନ୍ତୁ ଥିଲା ମିଛ ଖାଲି ମିଛ ।

ଆଉ କି ହେଜିବ ମତେ
ଡାକିବ 'ଚଗଲା'
ତମର ସାନ୍ନିଧ୍ୟେ ଆହା
ଦିନ କଟୁଥିଲା !

ଏବେ ବି ବିଶ୍ୱାସ
ମନୁ ପୋଛିନାହିଁ ମୋର
ହେଉ ସଞ୍ଜ ହେଉ ରାତି
ଦିନ ଦ୍ୱିପ୍ରହର

ଏଇଠୁ ଡାକିବି ଯେବେ
'ରାଓ ବାବୁ' 'ରାଓ ବାବୁ' ବୋଲି
ହେଜୁଥିବ କାଶୀନାଥ ଡାକ
ଶୁଣୁଥିବ ଉତ୍ସାହରେ
ତାହା କାନ ଧାରି ।

■

## ସୁରେଶ ବଳବନ୍ତରାୟ

### ନୀଳ ଈଶ୍ୱର : ନିବିଡ଼ ଅନ୍ଧାର

ଏବେ ଗ୍ରାମଦେବତୀ ପୀଠରେ
ଲିଭି ଯାଇଚି ସଂଧ୍ୟାଦୀପ
ଗ୍ରାମ୍ୟଜୀବନରେ ନିବିଡ଼ ଅନ୍ଧାର ।

ଗ୍ରାମ୍ୟ ପୁଷ୍କରିଣୀରେ ପଦ୍ମପାଖୁଡ଼ା ତଳେ
ଖେଳୁଛି ମାଛ
କାଳୀୟ ଉପରେ
ନୃତ୍ୟରତ ଜଗନ୍ନାଥ
ହାତରେ ବଂଶୀ ଓ କାଳୀୟର ଲାଂଜ ।

ଗୋଧୂଳି ବେଳାରେ
ଗୋଠବାହୁଡ଼ା ଗାଈପଲର ଆଖିରେ ବିଷାଦ
ଗଛବୃଛରେ ଫୁଲ ରଂଗହୀନ ।

ଦୁଇନାରୀ ବି ଶୁକପକ୍ଷୀ ଉବାଚରେ ସ୍ତବ୍ଧ
ଟଣାଟଣା ଆଖିର ମୁଦ୍ରାରେ
କେଉଁ ଶିଳ୍ପୀର ଅବର୍ତ୍ତମାନର ଭାବ ।

ବଂଶୀସ୍ୱନରେ ଦୁଃଖର ସା'ନାଇ
ନୀଳ ଈଶ୍ୱର ବଂଶୀ ବାଉଛନ୍ତି
ପୀତ ଦୁକୁଳ
ସତେ ଯେମିତି ପାଠ କରୁଛନ୍ତି ଜୀବନ୍ୟାସ ମନ୍ତ୍ର ।
ନୀଳ ଈଶ୍ୱର ଧରିଛନ୍ତି
ସେହି ଅଲକ୍ତକ ପଦଯୁଗଳ

ଗାଧୁଆ ଘାଟର ଆତ୍ମୀୟତାରେ
ଏବେ ଏକାକୀ ଜୀବନ
ଏକାକୀତ୍ୱର ଜୀବନ
ଅଂଧକାରର ଜୀବନ ।
ଅଂଧକାରର ରଂଗ କ'ଣ
ଯନ୍ତଣା ??



## ଦିନନାଥ ପାଠୀ

# ଚିତ୍ରରେ ଅମରତ୍ୱର ସନ୍ଧାନ

ଫେବୃଆରୀ ତିନି ତାରିଖ ସଂଧ୍ୟା । ମୁଁ ଗଙ୍ଗା ଆରତି ଦେଖିବାପାଇଁ ଦଶାଶ୍ୱମେଧ ଘାଟକୁ ଡଙ୍ଗାରେ ଯାଇଥିଲି । 'ଗଙ୍ଗାବତରଣ' ପରେ ଗଙ୍ଗା ସାଙ୍ଗରେ ଏତେ ଆତ୍ମୀୟତା ବଢ଼ିଯାଇଥିଲେ ବି ଗଙ୍ଗା କିମିତି ଖେଟା ଖେଟା ଲାଗୁଥିଲେ । ପୁରୁଣା ଘାଟ, ପୁରୁଣା ଅନୁଭବ ସବୁ କିମିତି ଆଉ ଭିନ୍ନେ ଭିନ୍ନେ ଲାଗୁଥିଲା । ସୁଇଜର୍‌ଲ୍ୟାଣ୍ଡରୁ ଓଡ଼ିଶା ପରିଦର୍ଶନରେ ଆସିଥିବା ଦୁଇଜଣ ଶିଳ୍ପୀ ଜୋହାନା ଡାହମ୍ ଓ ମାନ୍‌ଫ୍ରେଡ଼୍ ନିସଲମୁଲର୍ ମୋ ସାଙ୍ଗରେ ଥିଲେ । ଆମେ ତିନିହେଁ ପ୍ରଥମେ ହରିଶ୍ଚନ୍ଦ୍ର ଘାଟରେ ଅଟକିଲୁ । ଶ୍ମଶାନ ଘାଟ ସହିତ ଓ ଶ୍ମଶାନରେ ମଣିଷମାନେ ଦାହ ହେଉଥିବାର ବିରଳ ଅନୁଭବ ଭିତରେ ସେମାନେ ବୁଡ଼ିଗଲେ । ସେଇଠି ଦୁଇତିନୋଟି ଶବ ଦାହ ହେଉଥିଲେ । ଆଉ ଦୁଇ ତିନୋଟି ଶବ ଶବାଧାର ଉପରେ ନଦୀକୂଳେ ଥୁଆ ହେଇଥିଲେ । ଗଙ୍ଗାଘାଟମାନଙ୍କରେ ଶବମାନଙ୍କର ସମାଗମ ନିତିଦିନିଆ କଥା । ମୃତ୍ୟୁଚେତନା ଗଙ୍ଗା ପ୍ରବାହ ସାଙ୍ଗରେ ନିଶ୍ଚିହ୍ନ ହେଇସାରିଛି । ଗଙ୍ଗା ହିଁ ମୃତ୍ୟୁକୁ ଜୀବନରେ ପରିଣତ କରିଦିଏ । ଜୋହାନା କହିଲା ମୃତ୍ୟୁ ହିଁ ଜୀବନର ପ୍ରତୀକ ।

ହରିଶ୍ଚନ୍ଦ୍ର ଘାଟରେ ଶବଦାହର ଅପୂର୍ବ ଦୃଶ୍ୟ ଦେଖିସାରି ଓ ରୂପାନ୍ତରର ଅଲୌକିକତା ହେଜିସାରି ଆମେ ମଣିକର୍ଣ୍ଣିକା ଘାଟ ଆଡ଼େ ମୁହେଁଇଲୁ । ଏଠି ଦଶ ପନ୍ଦର ସରିକି ଶବ ମୁକ୍ତିପାଇଁ ଅପେକ୍ଷା କରିଥିଲେ । ସୁନାରଙ୍ଗର ଜରି ସେମାନଙ୍କ ଅବକ୍ଷୟିତ ଦେହକୁ ଆଚ୍ଛାଦିତ କରିଥିଲା । ସେମାନେ କିନ୍ତୁ ଜ୍ୟୋତିର ସ୍ୱରୂପ ଭଳିଆ ଦେଖାଯାଉଥିଲେ । ସେମାନେ ଲାଗୁଥିଲେ ପ୍ରତ୍ୟେକେ ଜଣେ ଜଣେ ଅନିର୍ବାପିତ ଦୀପଶିଖା । ମୁଁ ଚନ୍ଦ୍ରଙ୍କ କଥା ଭାବୁଥିଲି । ମନେ ପଡ଼ିଯାଉଥିଲା କଳିଙ୍ଗ ହସ୍‌ପିଟାଲରେ ତାଙ୍କର ଧୋବ ଫର ଫର ଶେଯ । ଲାଗୁନଥିଲା ସେଠି ମଣିଷଟିଏ ଶେଯରେ ପଡ଼ି ରହି ମୃତ୍ୟୁସହ ସଂଗ୍ରାମ କରୁଛି । ଲାଗୁଥିଲା ପ୍ରାଣର ଉଚ୍ଛ୍ୱାସଟିଏ ଚିତ୍ରିତ ଭବିତବ୍ୟ ଭଳି ନିଃଶେଷ ହେଇଯାଉଛି । 'ପାଠୀବାବୁ ମୁଁ ଯାଉଛି' ଘେନିଲାଭଳି କେଇପଦ କଥା ମୋ କାନରେ ପଡ଼ିଯାଇଥିଲା । ଲକ୍ଷ୍ୟକଲି ମଣିକାର୍ଣ୍ଣିକା ଘାଟରେ ଅତି ଅଦ୍ଭୁତଭାବେ ଶବଟିଏ ହଲ୍‌ଚଲ୍ ହେବା ଦେଖାଗଲା । ହଠାତ୍ ଦରି ଭିତରୁ ହାତଟିଏ ବାହାରକୁ ବାହାରି ପଡ଼ି ଠାରିଲା ଆଉ ଠିକ୍ ଚନ୍ଦ୍ର ଉଚ୍ଚାରିଥିବା ବାକ୍ୟଟି କହିଲା ଭଳି ଲାଗିଲା, ପାଠୀବାବୁ ଯାଉଛି ।

ଭୁବନେଶ୍ୱର ଓ ବନାରସ ଭିତରେ ପ୍ରାୟତଃ ମୁଁ ଫରକ ଦେଖୁନଥିଲି । ଉଭୟେ ଚନ୍ଦ୍ରଶେଖରଙ୍କ ଲୀଳାକ୍ଷେତ୍ର । ସେଠି ମହାପ୍ରଭୁ ଲିଙ୍ଗରାଜ ତ ଏଠି ପରଂବ୍ରହ୍ମ କାଶୀ

ବିଶ୍ୱନାଥ । ଆମେ ମଣିକର୍ଣ୍ଣିକାରୁ ଫେରିଲୁ । ଦଶାଶ୍ୱମେଧ ଘାଟରେ ଆରତି ସରି ଆସିଥାଏ । ନିର୍ବାପିତ ହେଉ ଆସୁଥିବା ପ୍ରତ୍ୟେକଟି ଦୀପଶିଖା ମୋତେ ସୁନା ଜରିରେ ଆଚ୍ଛାଦିତ ଶବଭଳି ଲାଗୁଥିଲେ । ମୁଁ ଶବ ଓ ଶିବଙ୍କ ଭିତରେ ପ୍ରଭେଦ ଦେଖିପାରୁ ନଥିଲି । ବନାରସର ମହାଶ୍ମଶାନରେ ସମସ୍ତେ ଲାଗୁଥିଲେ ଶିବ ଭଳି, ଶବ ଭଳି ।

ସ୍ୱର୍ଗବାସ ଆଗରୁ ବଂଧୁ ଚନ୍ଦ୍ରଶେଖର ଯେ ବନାରସ ଆସିଥିଲେ, ଏକଥାନେଇ ମୁଁ ଦୃଢ଼ ନିଶ୍ଚିତ । ସେ ଜାଣିଥିଲେ ଏଠି ମୁଁ ଅଛି । ଏବଂ ଜାନୁଆରୀରେ ଶେଷଦେଖା ଶେଷକଥାବାର୍ତ୍ତା । ସେ ଜାଣିଥିଲେ ତାଙ୍କ ଅତିଆଦରର କନ୍ୟା ଗୀତା, ଜୋଇଁ ପ୍ରଦୋଷ, ନାତି ଆଶୁତୋଷ, ପରିତୋଷ ସମସ୍ତେ ବନାରସରେ ଅଛନ୍ତି । ଅସୁସ୍ଥ ହେବା ଆଗରୁ ବନାରସ ତାଙ୍କପାଇଁ ଆଉ ଗୋଟିଏ ଘର ପାଲଟି ଯାଇଥିଲା । ବନାରସରେ ଅନେକଥର ପ୍ରଦୋଷ ଘରେ ନ ହେଲେ ଏଲିସ ବୋନର ପ୍ରତିଷ୍ଠାନରେ ଦେଖାହେଇଛି । ଗଙ୍ଗାରେ ଡଙ୍ଗାରେ ବହୁବାର ଏକାଠି ବୁଲିଛୁ । ମୁଁ ଏବେ ଏକୁଟିଆ ଗଙ୍ଗାଘାଟରେ ଜନ୍ମ ମୃତ୍ୟୁର ଅଲୌକିକ ମହିମାରେ ଉଚ୍ଚକିତ ହେଉଛି । ଖବର ଆସିଲା ବଂଧୁ ଚନ୍ଦ୍ରଶେଖର କୋମାରେ । କୋମା ତୁରୀୟ ଅବସ୍ଥା ଭଳି ଏକ ଅନନ୍ୟ ଅବସ୍ଥା । ଦେହ ନିଶ୍ଚଳ ହେଇ ପଡ଼ିଥାଏ କିନ୍ତୁ ପ୍ରାଣର ସ୍ୱରୂପ ନିଜ ମୁକ୍ତିର ରାହା ଯୋଗାଡ଼ିବାରେ ଲାଗିପଡ଼ିଥାଏ । ଚନ୍ଦ୍ରଶେଖର ଗୀତା ଓ ପ୍ରଦୋଷକୁ କହିଥିବେ ଆସ ! ଶୀଘ୍ର ଆସ ! ମୁଁ ଯାଉଛି । ଯିବାପାଇଁ କେଡ଼େ ବ୍ୟାକୁଳତା । ଯାହାକୁ ଥରେ ଡାକରା ଆସେ ସିଏ ହିଁ ଏ ବ୍ୟାକୁଳତା ହେଜି ପାରେ ! ଝିଅ ଜୋଇଁକୁ ଚନ୍ଦ୍ର କହିଥିବେ ଡେଣେ ମୋର ଡେରି ହେଇଯିବ । ପ୍ରଦୋଷ ଓ ଗୀତା ସେହି ସଂଧ୍ୟାରେ ଭୁବନେଶ୍ୱର ବାହାରିଲେ ।

ଦୀର୍ଘ ଛୟାଳିଶି ବର୍ଷର ବନ୍ଧୁତା, ମୋଟା ମୋଟି ଅର୍ଦ୍ଧଶତାବ୍ଦୀର ଏକ ଲମ୍ୱାକାହାଣୀ-ଏ ଜାତିର ଚିତ୍ରକଳା ଜଗତର ଇତିହାସ । କେତେ ମାନ ଅଭିମାନ, ରାଗ ରୁଷା ଭିତରେ ଗୁନ୍ଥା ବିରଳ ବନ୍ଧୁତା । ବନ୍ଧୁତ୍ୱର ସ୍ନେହ ଲଘିବା ପାଇଁ କାହାରି ହେଲେ ସାହସ ନଥିଲା । ଝଡ଼ା ଝଂଜା ନ ଆସିଚି ବୋଲି ନୁହେଁ, ପ୍ରତିଟି ନୂଆ ସକାଳ ବନ୍ଧୁତାକୁ ନୂତନ ଦିଗନ୍ତ ଆଡ଼େ ବାଟ କଢ଼େଇ ନେଇଛି । ଖଲିକୋଟରେ ପଢ଼ିଲାବେଳର କଥା, ପୋଲସରା ତାଙ୍କ ଘରେ ସବୁ ଛୁଟିରେ ରହଣି, ଲୀଳା, କ୍ରୀଷ୍ଣା, କାମଲା ଆଉ ପାପା, ତାଙ୍କର ଭଉଣୀମାନେ ମୋତେ ଡାକିବେ ଭାଇନା, ଓଡ୍ରେଞ୍ଜି । ଭାତ ବଢ଼ାହେଲାଣି ଆସ । ଏବେ ଚନ୍ଦ୍ରଶେଖର କହିଲେ ''ମୁଁ ଯାଉଛି '' । ନିଶ୍ଚୟ କାହାର ଡକରାରେ ଏଭଳି ଉତ୍ତର । ସେ ପାରିରୁ ତାଙ୍କ ପରିବାରର ବାରଣା ଲୋକ ତାଙ୍କୁ ଡାକୁଛନ୍ତି । ଆନେୟା ଓଡ୍ରେଞ୍ଜେ । ଭାତବଢ଼ାହେଲାଣି ଆସ । କେଡ଼େ ସ୍ନେହସ୍ନିଗ୍ଧ ଡାକ, ଆସ ! ତାଙ୍କ ବଡ଼ ଭଉଣୀ - ବହୁଆଗରୁ ଚାଲିଯାଇଥିଲେ, ଏବେ ସପ୍ତାହେ ହେଇନି ତାଙ୍କ ବଡ଼ଭାଇନା କାମେଶ୍ୱର ରାଓ ।

ବାପା, ମା, ଆଉ ଜଣେ ଭାଇ, ଦିଟାକୁ ଛାଡ଼ି ସବୁ ଭଉଣୀ, କାମଲାର ସ୍ୱାମୀ ରାଘବ, ଏମାନେ ସମସ୍ତେ ଚାଲିଯାଇଛନ୍ତି । ସେ ବେଳର ବନ୍ଧୁତାର ସନ୍ତକ ଦୁଇଟି ଭଉଣୀ, ଶାଢ଼ୀ ଅଞ୍ଚଳର ଦୁଇ ମଙ୍ଗଭଳି କାମଲା ବିଷମକଟକରେ, ପାପା ଗାଉଲାକେଲାରେ । ଏସବୁ ସ୍ମୃତି ରାତି ସାରା ମୋତେ ଆଛନ୍ନ କରି ରଖିଲା ।

ସକାଳୁ ଖବର ପାଇଲି ଚନ୍ଦ୍ରଶେଖର ରାତି ସାଢ଼େ ଗୋଟାଏ ବେଳେ ଶେଷରେ ଚାଲିଗଲେ । ସବୁ ଘଟଣ ଅଘଟଣରେ ଗଙ୍ଗା ହିଁ ଭରସା । ଗଙ୍ଗାଦର୍ଶନ ପାଇଁ ଘାଟ ଆଡ଼େ ବାହାରିଲି । କୋହଲା ପାଗ ଦେହ ଥରେଇ ଦେଉଥାଏ । ମଣିକର୍ଣ୍ଣିକା ଘାଟରେ ପହଞ୍ଚିଲା ବେଳକୁ ଖରା ବାହାରି ପଡ଼ିଥିଲା । ମୁଁ ଅପେକ୍ଷା କରୁଥିଲି ଚନ୍ଦ୍ରଶେଖରଙ୍କ ଶବ ପହଞ୍ଚିବ । ଭାବବିହ୍ୱଳ ମୁହୂର୍ତ୍ତ । ଆମେ ଦି'ଜଣ ଏବେ ପୃଥିବୀର ଏପାରେ ସେପାରେ, ଏପାରିରେ ପୃଥିବୀ, କିନ୍ତୁ ସେପାରିରେ ସବୁ ଶୂନ୍ୟ । ଘନନୀଳ ଆକାଶ ଓ ଉତ୍ତାଳ ସମୁଦ୍ର ଥଳକୂଳହୀନ ଏକ ଦୀର୍ଘ ନିରବତା । ମୁଁ ସେତେବେଳକୁ ନିଜ କର୍ତ୍ତବ୍ୟ ସ୍ଥିର କରିନେଇଥିଲି । ପୂର୍ବଦିଗକୁ ଚାହିଁରହିଛି । ଶବାଧାର ଧରି ଦୁଇପୁଅ, ତାରା, ଗିରି, ଦୁଇ ଜୋଇଁ ପ୍ରଦୋଷ, ବାବୁ, ଘାଟରେ ପହଁଞ୍ଚିଲେ ତା'ପଛକୁ ଲମ୍ବା ଧାଡ଼ି । ଧାଡ଼ିରେ ସାମିଲ ହେଇଛନ୍ତି 'ଓ୍ୱା'ର ସଦସ୍ୟଗଣ ଡି.ଏନ୍. ରାଓ, ରାମହରି, ଶିବ ଓ କାଶୀ, ତା ପଛକୁ ପଛ ବଂଧୁ ଶିବରାମ, ଜଗଦୀଶ, ଦେବରାଜ, ବଳଦେବ, ଗଜେନ୍ଦ୍ର, ତାରାକାନ୍ତ, କେଦାର, ରମେଶ, ଶରତ, ଚନ୍ଦ୍ରମଣି, ଜୟନ୍ତ ଏମିତି କେତେ ଚିହ୍ନା ଅଚିହ୍ନା ମୁହଁ । ସମସ୍ତଙ୍କ ଗଳାରେ ଜଗନ୍ନାଥଙ୍କ ଡୋର, ସମସ୍ତେ ପୁରୀ ସ୍ୱର୍ଗଦ୍ୱାର ହେଇ ଏଠି ପହଞ୍ଚିଛନ୍ତି । ଚନ୍ଦ୍ରଶେଖର ମୋତେ ପୁଣି ତ ଶେଷଥର କହିବ 'ଯାଉଛି' ବୋଲି । ସେଇଥିପାଇଁ ଶବପଟୁଆର ଗଙ୍ଗାଘାଟରେ ପହଞ୍ଚିଛି । ମଣିକର୍ଣ୍ଣିକାରେ ଶବସଂସ୍କାର ହେଲାବେଳକୁ ମଧ୍ୟାହ୍ନ ଗଡ଼ି ଗଲାଣି । ମୋ ସାଙ୍ଗରେ ରାଜୀବଲୋଚନ, ଯିଏ ଚନ୍ଦ୍ରଶେଖରଙ୍କ ଚିତ୍ରଶୈଳୀରେ ଛବି କରେ । ଆଖି ଦୁଇଟି ମୁହଁର ସୀମା ଅତିକ୍ରମ କରି ପଦାକୁ ବାହାରିଥିବ ଗୁଜରାଟୀ ଧାରାରେ । ବନାରସରେ ମଡ଼ାସାଙ୍ଗିଆଙ୍କ ଅଭାବ ନାହିଁ ।

ବେଳଲେଉଟାଣି ଆଗରୁ ସମସ୍ତେ ଭୁବନେଶ୍ୱର ବାହୁଡ଼ିଗଲେ । କ୍ଳାନ୍ତି ଓ ମାନସିକ ବିଷାଦରେ ଅପରାହ୍ଣ କଟିଲା । ଗଙ୍ଗା କିନ୍ତୁ ଚଳଚଂଚଳ । ମଣିଷଙ୍କ ଆଗମନ ଓ ପ୍ରତ୍ୟାବର୍ତ୍ତନରେ ଗଙ୍ଗାଙ୍କ ଚିରନ୍ତନତାରେ ବ୍ୟତିକ୍ରମ ହୁଏନି । ନିଜେ ଗଙ୍ଗାଜଳ ସିଞ୍ଚି ଅସ୍ଥି ଶୀତଳେଇଲି । ରାଜୀବ ମାଟି ଘଟଟିଏ ଆଣିଲା, ସେଥିରେ ଯତ୍ନକରି ଅସ୍ଥି ସଞ୍ଚିଲି । ରାଜୀବ କହିଲା ତେଲୁଗୁ ସଂପ୍ରଦାୟର ସବୁକାମ କେଦାରଘାଟରେ । କେଦାରଘାଟଫେରି କେଦାରଶ୍ୱରଙ୍କ ଅଙ୍ଗଲାଗି ମାଳା, ବେଲପତ୍ର ଅସ୍ଥିକଳସରେ ଚଢ଼େଇଲି । ପରିବାରର ଲୋକେ ତ ଅସ୍ଥିନେଇ ଗଙ୍ଗାଙ୍କ ପାଖକୁ ଆସନ୍ତି । ମୁଁ ବା ଅସ୍ଥିନେଇ ଭୁବନେଶ୍ୱର କାହିଁକି

ଫେରିଥାନ୍ତି । ସେ ସଂଧ୍ୟାରେ ଅସ୍ଥିକଳସ ନେଇ ଆମେ ପୁଣି ଡଙ୍ଗାରେ ଗଲୁ । ଡ଼ ଏଥର ମଣିକର୍ଣ୍ଣିକାକୁ ପଛରେ ପକେଇ ସବୁଘାଟ ଅତିକ୍ରମ କରି ସମୁଦ୍ର ଆଡ଼େ ଯେଉଁଠି ନଦୀ ଦିଗନ୍ତରେ ହଜିଯାଇଛି । ସେଠୁ ଜଗନ୍ନାଥଙ୍କ ନୀଳଚକ୍ର ନେତ ଓ ସ୍ୱର୍ଗଦ୍ୱାର ଦେଖାଯାଉଥିଲା ।

ତା' ପରଦିନ ବନାରସରୁ ଫେରି ଚନ୍ଦ୍ରଶେଖରଙ୍କ ଘରକୁ ଗଲି । ବନ୍ଧୁପରିଜନ ଦୁଃଖ, ଆତଙ୍କ ଓ ହତାଶ ଭିତରେ ସଢୁଥିଲେ । ମୁଁ ସେମାନଙ୍କ ଭିତରେ ଓଦିନା ଭାଗ୍ୟଲକ୍ଷ୍ମୀଙ୍କୁ ଖୋଜୁଥିଲି । ସେ ଜୀବନର ସମସ୍ତ ପ୍ରାସଙ୍ଗିକତା ହରେଇ ଦେଇଥିଲେ, ଭାଗ୍ୟଲକ୍ଷ୍ମୀ ତ ବହୁଆଗରୁ ସେପାରିକୁ ଚାଲିଯିବାର କଥା । ଚନ୍ଦ୍ରଶେଖରଙ୍କ ସ୍ନେହବନ୍ଧନ ତାଙ୍କୁ ସଂସାରରେ ବଂଚେଇ ରଖିଥିଲା । ତାଙ୍କୁ ପ୍ରବୋଧନା ଦେବାପାଇଁ ମୋ ପାଖରେ ଭାଷା ନ ଥିଲା ।

ତାଙ୍କର କ୍ରିଏଟିଭ୍ ଆର୍ଟ ସେଣ୍ଟରରେ ଚନ୍ଦ୍ରଶେଖରଙ୍କ ମଠାକନାରେ ଅଙ୍କିତ ଛବିମାନେ ମୋ ଆସିବା ବେଳକୁ ଅନେଇ ରହିଥିଲେ । 'ଗୋଗୋଷ୍ଠ'ର ଧେନୁ ଓ ବସ୍ଥାମାନେ ଫିଟିଯାଇଥିଲେ । 'ଚନ୍ଦ୍ରପୂଜା'ରେ ଚନ୍ଦ୍ର ମଳିନ ପଡ଼ିସାରିଥିଲେ । ଏଣୁ ଭୂଆସୁଣିମାନେ ମନଦୁଃଖରେ ଯେଝାଘର ଲେଉଟୁଥିଲେ । ନାୟିକାଟିର ସ୍ତନଦେଶରୁ ଶୁଆପକ୍ଷୀ ବଣଭିତରକୁ ଉଡ଼ିଯାଇଥିଲା । କୃଷ୍ଣଙ୍କ ବେଣୁସ୍ୱର ନିଥର ହେଇଯାଇଥିଲା । ରାଧା ବିରହରେ ଘାରି ହେଉଥିଲେ । ମୁଁ ତାଙ୍କ ଚିତ୍ରର ଗାଁ ପୋଖରୀ ପାଖକୁ ଫେରିପଡ଼ି ଦେଖିଲି ପଦ୍ମ ଓ କଇଁଫୁଲମାନେ ବର୍ଣ୍ଣ ହରେଇ କହରିଆ ଦିଶୁଥିଲେ ଓ ମାଛମାନେ ତ୍ରସ୍ତ ଓ ସ୍ଥବିର ହେଇପଡ଼ିଥିଲେ । ମୁଁ ମୋର 'ଗଙ୍ଗା ଟୁ ଗେଞ୍ଜସ୍' ସିରିଜ୍‌ର ଚିତ୍ର 'ଘଟାକାଶ'କୁ ମନେପକାଉଥିଲି । ମାଛମାନେ ମୋର ଅତିପ୍ରିୟ । ମୁଁ ସବୁଠୁ ବୁଢ଼ାମାଛଟିକୁ ପଚାରିଲି ।

ବଂଧୁ କ'ଣ ହେଇଛି ତମର, ତମେ ଏତେ ତ୍ରସ୍ତ ଲାଗୁଛ ? ମାଛ ମୋ ମୁହଁକୁ ଅନେଇ ସମବେଦନାରେ କହିଲା , ତମେ ତ କମ୍ ତ୍ରସ୍ତ ଲାଗୁନ, ତମେ ସଂପୂର୍ଣ୍ଣ କ୍ଲାନ୍ତ ଓ ବିଷଣ୍ଣ ଦେଖାଯାଉଛ । ମୁଁ ତଥାପି ମାଛ ଠାରୁ ତା' ଉତ୍ତର ପାଇବି ବୋଲି ଅପେକ୍ଷା କରିଥିଲି ।

ଯେଉଁ ପ୍ରଶ୍ନ 'ସାୟୋନାରା'ରେ ଅରୁଣ କାର୍ପମାଛକୁ ପଚାରିଥିଲା, ସେହି ପ୍ରଶ୍ନ ଦୋହରାଇଲି ।

ଜନ୍ମମୃତ୍ୟୁର ରହସ୍ୟ କ'ଣ ?

କିଏ ଜଣେ ମୋତେ କହିଲା ଭଳି ଲାଗିଲା

'ଚିତ୍ରରେ ଅମରତ୍ୱର ସନ୍ଧାନ'।

■

## ଶାନ୍ତନୁ ମହାପାତ୍ର

## ଦୁଃଖଦ ଅବସର

ମାତ୍ର ୬୪ ବର୍ଷ ବୟସରେ ଲଳିତକଳା ତଥା ହସ୍ତଶିଳ୍ପ କ୍ଷେତ୍ରରେ ବିଗତ ଚାରିଦଶନ୍ଧି ମଧ୍ୟରେ ଜଣେ ପ୍ରବୀଣ ଗୁରୁ, ଶିକ୍ଷାବିତ୍, ସଂଗଠକ ତଥା ଚିତ୍ରକଳା ଶିଳ୍ପୀ ହିସାବରେ ପ୍ରତିଷ୍ଠିତ ଓଡ଼ିଶା ତଥା ଭାରତର ବହୁସ୍ଥାନରେ ବହୁଳ ଭାବରେ ସମ୍ମାନିତ 'କଳା ବିଭୂଷଣ' ଶ୍ରୀଚନ୍ଦ୍ରଶେଖର ରାଓ ଆଉ ଇହଜଗତରେ ନାହାନ୍ତି ଏକଥା ବିଶ୍ୱାସ କରିହୁଏନା । ଭକ୍ତକବି ଜୟଦେବଙ୍କର ବିଶ୍ୱବିଖ୍ୟାତ 'ଗୀତଗୋବିନ୍ଦ'ର ବିଷୟବସ୍ତୁକୁ ଅପୂର୍ବ ରଙ୍ଗସମାରୋହରେ ତାଙ୍କର ଅମର ତୂଳୀ ଜରିଆରେ ସଜାଇ ଜୀବନ୍ତ କରିପାରିଥିଲେ ସେ । ଶତାବ୍ଦୀ ମିଡ଼ିଆ ପବ୍ଲିକେସନ୍ ତରଫରୁ ତାଙ୍କର ଘଟଣା ଓ ସ୍ମୃତି ବହୁଳ 'ଆତ୍ମଜୀବନୀ'ର ପ୍ରକାଶନ ତାଙ୍କର ଅଲୌକିକ ପ୍ରତିଭାର ଏକ ସ୍ମାରକୀ । ଓଡ଼ିଶା, ଭାରତବର୍ଷ ତଥା ଆନ୍ତର୍ଜାତିକ ସ୍ତରରେ ତାଙ୍କର ସୁଖ୍ୟାତି ଥିଲା ଜଣେ ଯାଦୁକରୀ ଚିତ୍ରକାର ହିସାବରେ । ସର୍ବୋପରି ସେ ଥିଲେ ଜଣେ ଆଦର୍ଶଗୁରୁ, ଅମାୟିକ, ପରୋପକାରୀ ବଂଧୁବତ୍ସଳ ବ୍ୟକ୍ତିବିଶେଷ ।

ତାଙ୍କର ଅକାଳ ବିୟୋଗରେ ଓଡ଼ିଶା ତଥା ଭାରତବର୍ଷ କଳାକ୍ଷେତ୍ରରେ ଏକ ସୁପୁତ୍ରକୁ ହରାଇଲା । ଆଜି ଏହି ଦୁଃଖଦ ଅବସରରେ ମୁଁ ମୋର ତଥା ସଂଗୀତନାଟକ ଏକାଡ଼େମୀ ତରଫରୁ ତାଙ୍କର ଆତ୍ମାର ସଦ୍‌ଗତି କାମନା କରିବା ସଙ୍ଗେ ସଙ୍ଗେ ତାଙ୍କର ପରିବାରବର୍ଗ ତଥା ଅଗଣିତ ଛାତ୍ରଛାତ୍ରୀ ଏବଂ ପ୍ରଶଂସକ ଗୁଣଗ୍ରାହୀଙ୍କୁ ସମବେଦନା ଜଣାଉଛି ।



## ଅସିତ ମୁଖାର୍ଜୀ

## ଏକ ସୃଜନୀ ଶୈଳୀର ଅବସାନ

ସୁମରୁ ସୁମରୁ ଦିନ ବିତିଯିବ । ସୃଜନୀ ପ୍ରତିଭାର ଶିଳ୍ପୀ ଚନ୍ଦ୍ରଶେଖର ରାଓଙ୍କର ଦେହାନ୍ତ ଖବର ହେଇ ହଜିଯିବ । କିନ୍ତୁ ସ୍ୱକୀୟ ସୃଜନଧାରାର ଶିଳ୍ପୀ ଚନ୍ଦ୍ରଶେଖର କେବେ ହଜିଯିବେ ନାହିଁ । ଚାରୁକଳାର ଇତିହାସରେ ତାଙ୍କର ନାମ ଓ ଯଶ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

ଆନ୍ଧ୍ର ଓ ଓଡ଼ିଶାର ପଟଚିତ୍ର ଢ଼ାଞ୍ଚାର ଏକ ଅଦ୍ଭୁତ ମିଶ୍ରଣ ଶୈଳୀର ପ୍ରତିଫଳନ ତାଙ୍କ କଳାସୃଷ୍ଟିରେ ଲକ୍ଷ୍ୟ କରାଯାଏ । ଯଦିଓ ସେ ଆଜି ଆମ ଗହଣରେ ନାହାଁନ୍ତି, ନିଜର ସ୍ୱତନ୍ତ୍ର ଶୈଳୀ ଓ ସୃଜନଶୀଳତା ପାଇଁ ତାଙ୍କର ଅଗଣିତ ରସିକ, କ୍ରେତା ତଥା ସମାଲୋଚକଙ୍କ ପାଖରେ ପ୍ରଶଂସାର ପାତ୍ର ହୋଇ ରହିବେ । ସେ ଅନେକ ପୁରସ୍କାର ଓ ସମ୍ମାନର ଅଧିକାରୀ ହୋଇଥିଲେ । ମୋର ବିଶ୍ୱାସ ଯେ, ବର୍ତ୍ତମାନ ତାଙ୍କ ନିଜସ୍ୱ ଶୈଳୀର ଉଦ୍ଭାବନୀ ଚିନ୍ତା ଆଗାମୀ ପୀଢ଼ିକୁ ଉଦ୍‌ବୁଦ୍ଧ କରିବ । ତାହିଁ ହେବ ତାଙ୍କ ସ୍ମୃତି ପ୍ରତି କଳା-ଜଗତର ବାସ୍ତବ ଶ୍ରଦ୍ଧାଞ୍ଜଳି ।

ତାଙ୍କ ଶିଳ୍ପଧାରାରେ ଅନୁପ୍ରାଣିତ ହୋଇ କୌଣସି ଶିଳ୍ପୀ ତାଙ୍କର କଳାକୃତିକୁ ସିଧାସଳଖ ଅନ୍ୟତ୍ର ପ୍ରଦର୍ଶିତ କରିଥିବାର ନଜିର ରହିଛି । ହେଲେ ଚନ୍ଦ୍ରଶେଖର ରାଓ ହିଁ ଚନ୍ଦ୍ରଶେଖର ରାଓ । ସମସ୍ତଙ୍କଠୁ ନିଆରା ।

■

## ରାଜକିଶୋର ମିଶ୍ର

### ସଂପର୍କ

ଶିଳ୍ପୀ ଚନ୍ଦ୍ରଶେଖର ରାଓଙ୍କ ସହିତ ମୋର ପ୍ରାୟ ୩୦ ବର୍ଷର ସଂପର୍କ ଥିଲା । ଜଣେ ସ୍ୱଳ୍ପଭାଷୀ, ଅମାୟିକ, ନିଃସ୍ୱାର୍ଥପର ବନ୍ଧୁ ଭାବରେ ଆମେ ପରସ୍ପରର ନିକଟତର ହୋଇଥିଲୁ । ତାଙ୍କଠାରେ ନୈରାଶ୍ୟବୋଧ, ବିଷାଦ ବା ସୌଭାଗ୍ୟରୁ ବଞ୍ଚିତ ହେବା ଦୁର୍ବଳ ମାନସିକତା ମୁଁ କେବେହେଲେ ଲକ୍ଷ୍ୟ କରି ନାହିଁ । କାହା ବିରୁଦ୍ଧରେ ତାଙ୍କର କୌଣସି ନିର୍ଦ୍ଦିଷ୍ଟ ଅଭିଯୋଗ ନଥିବା ମୁଁ ଭଲ ଭାବରେ ଜାଣିଛି । ରଙ୍ଗ ଓ ତୂଳୀର ସାଧନ ସାମଗ୍ରୀ ତାଙ୍କ ଜୀବନର କାନଭାସ୍‌କୁ ସମସ୍ତଙ୍କ ଅଲକ୍ଷ୍ୟରେ ବେଶ୍ ବର୍ଣ୍ଣିଳ କରିଛି । ଆଜି ତାଙ୍କର ହଠାତ୍ ଅବର୍ତ୍ତମାନତା ମୋତେ ଦାରୁଣ ଆଘାତ ଦେଉଛି ।

■

## ଚନ୍ଦ୍ରମଣି ବିଶ୍ୱାଳ

### ଚିତ୍ରର ଚରିତ୍ର:ଚରିତ୍ରଚିତ୍ର

ଖ୍ୟାତନାମା ଶିଳ୍ପୀ ଚନ୍ଦ୍ରଶେଖର ରାଓଙ୍କ ବିୟୋଗ ଯେତିକି ଆକସ୍ମିକ ସେତିକି ଦୁର୍ଭାଗ୍ୟଜନକ । ସେଦିନ ୪ ତାରିଖ ଫେବୃଆରୀ ସକାଳ ୯ଟା ବେଳେ ମୋର ଛାତ୍ର ରାମହରି ଜେନା ଓ ଠିକ୍ ପରେ ପରେ ବନାରସରୁ ଆମର ଲଳିତକଳା ଏକାଡ଼େମୀର ସଭାପତି ତଥା ସ୍ୱର୍ଗତ ରାଓଙ୍କର ଘନିଷ୍ଠ ବନ୍ଧୁ ଡକ୍ଟର ଦିନନାଥ ପାଠୀଙ୍କ ଠାରୁ ଏହି ମର୍ମନ୍ତୁଦ ଖବର ପାଇ ସହସା ଏକାଡ଼େମୀ ଅଫିସକୁ ଆସିଲି । ମୋ ସହକର୍ମୀମାନଙ୍କ

ସହାୟତାରେ ଧୂପ, ଫୁଲ ଯୋଗାଡ଼ କରି କାର୍ଯ୍ୟାଳୟ ମୁଖ୍ୟ ଫାଟକରେଶବ ଶୋଭାଯାତ୍ରାକୁ ଚାହିଁ ବସିଲି । ପୂର୍ବଯୋଜନା ଅନୁଯାୟୀ ସ୍ୱର୍ଗତ ରାଓଙ୍କ ମରଶରୀର ଆସିଲା । ଆମର ନିର୍ଦ୍ଦେଶକ, ସାହିତ୍ୟ ଏକାଡ଼େମୀ ଓ ସଂଗୀତ ଏକାଡ଼େମୀର ସଚିବମାନେ ଓ ଅନ୍ୟାନ୍ୟ କର୍ମକର୍ତ୍ତା ପୁଷ୍ପଗୁଚ୍ଛ ପ୍ରଦାନ କରି ତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କଲୁ । ତାପରେ ସେ ସ୍ୱର୍ଗଦ୍ୱାର ଚାଲିଗଲେ । ଏହି ସ୍ମୃତି ଭିତରେ ୧୯୮୯ରେ ଏହି ଏକାଡ଼େମୀ ଦ୍ୱାରା ରାଉରକେଲାଠାରେ ହୋଇଥିବା ରାଜ୍ୟ ସ୍ତରୀୟ ଚିତ୍ରଶିଳ୍ପୀ ଶିବିର କଥା ଭୁଲି ହେଲା ନାହିଁ । ଅନ୍ୟାନ୍ୟ ଶିଳ୍ପୀଙ୍କ ଭିତରେ ସେ ଥିଲେ ଓ ମୁଁ ମଧ୍ୟ ଥିଲି । ଚିତ୍ର ଆଙ୍କିବା ବେଳେ ବହୁ ହସଖୁସି ଭିତରେ ଆମେ ସମୟ ଅତିବାହିତ କରିଥିଲୁ ।

ତାଙ୍କ ଚିତ୍ରର ସମୀକ୍ଷା କରିବାକୁ ମୋର ସୀମା ମାନସିକସ୍ତରରେ ଖୁବ୍ ସୀମିତ । ଏଇଥିପାଇଁ ବୋଧହୁଏ ଶତାବ୍ଦୀ ମିଡ଼ିଆ ଦ୍ୱାରା 'ଚନ୍ଦ୍ରାୟନ' ଉନ୍ମୋଚନ ଅବସରରେ ମୋତେ ଦି'ପଦ କହିବାକୁ ଦିଆଗଲା ନାହିଁ । ସେତେବେଳେ ରାଓବାବୁ ଚେତାଶୂନ୍ୟ ଅବସ୍ଥାରେ ଥିଲେ । ଏହି ପୁସ୍ତକ ଉନ୍ମୋଚନ ଅବସରରେ ଆମ ଶିଳ୍ପୀ ବକ୍ତାମାନେ କହୁଥିଲାବେଳେ କଣ୍ଠରୁଦ୍ଧ ହୋଇଥିଲା ଓ କେହିକେହି କାନ୍ଦି ପକାଉଥିଲେ । ମୁଁ ମଧ୍ୟ ମଝିରେ ମଝିରେ କାନ୍ଦୁଥିଲି । ସେହି ସମୟ ପର୍ଯ୍ୟନ୍ତ ଜାଣି ନଥିଲି ଯେ ସେ ଏତେ ଶୀଘ୍ର ଚାଲିଯିବେ । ମାତ୍ର ଅବେଳାରେ ଗଲେ ସମସ୍ତଙ୍କ ମାନସିକତା ସନ୍ତୁଷ୍ଟ ହୋଇ ନ ଥାଏ । ତେବେ ତାଙ୍କ ଆତ୍ମାର ସଦ୍‌ଗତି ହେଉ, ତାଙ୍କ ସୃଷ୍ଟି ଅମର ହେଉ ଓ ସର୍ବୋପରି ଶ୍ରଦ୍ଧାଞ୍ଜଳି ପୁସ୍ତକ ପ୍ରକାଶ ପାଇଁ ଡ଼କ୍ଟର ଦିନନାଥ ପାଠୀଙ୍କର ଐତିହାସିକ ପଦକ୍ଷେପ ପ୍ରଶଂସନୀୟ ହେଉ । ପୂଜ୍ୟପୂଜା ପାଇଁ ଯିଏ ଆଗ୍ରହ ପ୍ରକଟ କରୁଛନ୍ତି ତାଙ୍କ ପାଇଁ ମୁଁ ମୋ ତରଫରୁ ଅଭିନନ୍ଦନ ଜଣାଇବାରେ କୁଣ୍ଠା କରିବି ନାହିଁ ଓ ଅନ୍ୟମାନେ ମଧ୍ୟ କୁଣ୍ଠା କରିବା ଉଚିତ ନୁହେଁ । ସ୍ୱର୍ଗତ ରାଓଙ୍କ ପଦାଙ୍କ ଅନୁସରଣ କରି ତାଙ୍କ ସୃଜନୀକୁ ଉଦ୍‌ଜୀବିତ କରି ରଖିପାରିଲେ ବା ସଙ୍ଗୀତ ସୁଧାକର ବାଳକୃଷ୍ଣ ଦାସଙ୍କ ପରି ତାଙ୍କର ପ୍ରତିମୂର୍ତ୍ତିଟିଏ ରାଜଧାନୀରେ ସ୍ଥାପିତ ହୋଇ ପାରିଲେ ଖୁବ୍ ଭଲ ହୁଅନ୍ତା ।



## ଦେବଦତ୍ତ ସାମନ୍ତସିଂହାର
## ଶିବଦ୍ୱର ଚନ୍ଦ୍ରଶେଖର

୧୯୪୦ ରୁ ୨୦୦୪ ସୁଦୀର୍ଘ ୬୪ ବସନ୍ତର ଚିତ୍ରରେଖା । ଶିଳ୍ପୀ ଚନ୍ଦ୍ରଶେଖର ରାଓ କଳାବିଦଗଧ୍ ଉତ୍କଳମାଟିର ଏକ ପ୍ରତିଭାଦୀପ୍ତ ରଂଗପଟୁଆର । ସାଧନାସ୍ନିଗ୍ଧ କଳାମୟ ବିଗ୍ରହ ସେ । ଭଂଜଭୂମିର ସୌରଭରେ ସୁରଭିତ ତାଙ୍କ କର୍ମପ୍ରବାହ । ରଙ୍ଗତୂଳୀର ଫୁଆର ଭିତରେ ସମାଧିସ୍ଥ ହୋଇଛି ତାଙ୍କର ପ୍ରବଣତା ସର୍ବସ୍ୱ ଜୀବନବୋଧ । କର୍କଟ ରୋଗ ତାଙ୍କ ଶରୀରକୁ ସିନା ଆପ୍ଲୁତ କରିଗଲା କିନ୍ତୁ ତାଙ୍କ ରୂପାନୁରାଗ ଓ ରସପିପାସା ହୋଇଗଲା ଉତ୍ତୋରୀର୍ଣ୍ଣ ।

କାଳୀଦାସଙ୍କର ମେଘଦୂତର ମହ୍ଲାର ମଧ୍ୟରେ ତାଙ୍କର କଲ୍ପ କଲ୍ପ କଳ୍ପନାର ଚିନ୍ତନ ଆଜି ଚିରଂଜୀବି ହୋଇଛି । ସାଧୁପ୍ରଧାନ କବି ଜୟଦେବ ଗୋସ୍ୱାମୀଙ୍କର ସୃଂଗାରୀକତାର ସ୍ୱପ୍ନବିଳାସ ତାଙ୍କ ତୂଳୀକାର ଅର୍ଘ୍ୟ ହୋଇଛି ପ୍ରାଣବନ୍ତ । ଅନୁଭବି ଦର୍ଶକର କଳାବିଧୌତ ଦୃଷ୍ଟିଭଙ୍ଗୀରେ ତାଙ୍କ ସୃଷ୍ଟି ଏ ଜାତିର କୃଷ୍ଟି ସୌରଭରେ ଅମର ହୋଇଛି । ପାଦତଳେ ତାଙ୍କର ଲୋଟିଆସିଛି ଅନେକ ବଧେଇ, ଅନେକ ଉପାୟନ । ସେ ଶିଳ୍ପୀ, ପ୍ରାପ୍ତିର ଆଶାରେ ନଥିଲା, କି କରତାଳିରେ ବିଶ୍ୱାସ ରଖିନଥିଲା । କେବଳ ସୃଷ୍ଟିରେ ଥିଲା ସାଧନାଦୀପ୍ତ ଆତ୍ମତୃପ୍ତି । ପୂଜ୍ୟ ଚନ୍ଦ୍ରଶେଖର ବାବୁ ତାଙ୍କର କର୍ମପ୍ରବଣତା ମଧ୍ୟରେ ଏ ଶତାବ୍ଦୀର 'ଜୟଦେବ' ହୋଇ ରହନ୍ତୁ । ସେ ଆତ୍ମା ପ୍ରତି କୃତାଂଜଳି ପୁଟରେ ଏତିକି ପ୍ରଣତି ଓ ବିନତି ।



## ରବିନାରାୟଣ ନାୟକ
## ସେ ଏକ ସର୍ବନାମ

ପାହାଡ଼ପାଚେରୀ ଘେରା ଖଲ୍ଲିକୋଟ ରାଜ ଉଆସ । ସେଇଠି ସ୍ଥାପିତ ହେଲା ଓଡ଼ିଶା ସରକାରଙ୍କ ଚାରୁକଳା ବିଦ୍ୟାଳୟ । ଚନ୍ଦ୍ରଶେଖର ରାଓ ସେଠାରେ ଥିଲେ ଜଣେ କୃତୀଛାତ୍ର । ନିର୍ଭୁଲ ଭାବରେ ଅଲଗା ବାରିହୋଇ ପଡୁଥିବା ଜଣେ ଦରଦୀ ଚିତ୍ରଶିଳ୍ପୀ ରୂପେ । ମୁଁ ତାଙ୍କୁ ସେଇଦିନରୁ ଚିହ୍ନି ଆସିଛି ପୁଣି ମୋ ଜୀବନର ଏଇ ଅନ୍ତିମ ପ୍ରହର ଯାଏ । ଏଇ ସ୍ନେହାସ୍ପଦ-ଯଶସ୍ୱୀ ଚିତ୍ରଶିଳ୍ପୀଙ୍କର ବିୟୋଗ ବାର୍ତ୍ତା ସେ ଦିନର ଅନ୍ତରଙ୍ଗ ସ୍ମୃତି ଓ ଗଭୀର ଅନୁଭୂତିକୁ ମାତ୍ର ଗୋଟିଏ ମହୂର୍ତ୍ତରେ ମୋ ଭିତରେ ଉଦଜ୍ଜୀବିତ କରି ଦେଇଥିଲା । ତାଙ୍କର ସମସାୟିକ କଳାଛାତ୍ରମାନଙ୍କ ମଧରେ ସେ କିଛିଟା ସ୍ୱତନ୍ତ୍ରତାର ଅଧିକାରୀ ଥିଲେ ।

ଶାନ୍ତ, ସରଳ, କର୍ତ୍ତବ୍ୟନିଷ୍ଠ, ମିଷ୍ଟଭାଷୀ ଓ ଅତି ସହଜ ବିଶ୍ୱାସୀ । ଏ ଦରଦୀ ଚିତ୍ରଶିଳ୍ପୀ-ଜୀବନରେ କେବଳ 'ହଁ' ବ୍ୟତୀତ-'ନାଁ'-କହି ଜାଣନ୍ତି ନାହିଁ -ପରିଣତି ଯାହା ହେଉ ନା କାହିଁକି । ବାହୁତି ଚଟିଆ ତୁଲ୍ୟ ତାଙ୍କ ଶିଳ୍ପୀ-ଜୀବନର ପ୍ରାରମ୍ଭିକ ସଙ୍ଗୀତ ଏବେ ବି ମୁଁ ଶୁଣିପାରିଛି । କାରଣ ମୋ ଛାତ୍ରମାନେ ମୋ ହୃତ୍‌ପିଣ୍ଡର ଅଂଶ ବିଶେଷ-ଯିଏ ଯେଉଠି ଥାଆନ୍ତୁ ପଛକେ । ଅତି ସଂକ୍ଷେପରେ ଏ ଶିଳ୍ପୀଙ୍କର ପରିଚୟ ହେଉଛି ଯେ-ସେ ଥିଲେ ଭାରତୀୟ ପ୍ରାଚୀନ ଚିତ୍ରଣ ପଦ୍ଧତି ସମୂହର ନିଛକ ପୂଜାରୀ । ଜୀବନର ପ୍ରଥମାର୍ଦ୍ଧରୁ କିଛି ଅଧିକ କାଳ ପର୍ଯ୍ୟନ୍ତ-ସ୍ୱର୍ଗତଃ ରାଓଙ୍କର କଳାକୃତିରେ ଯେଉଁ ସୁଲଳିତ ଅଙ୍କନ, ଲୋଭନୀୟ ଚିତ୍ରଣ ଓ ସୁରୁଚି ସଂପନ୍ନ ଚୂଡ଼ାନ୍ତ ପରିସମାପ୍ତିର ଦୃଷ୍ଟାନ୍ତ ପରିଲକ୍ଷିତ ହୁଏ-ତାହା ତାଙ୍କ ପ୍ରତିଭାର ଅକ୍ଷୟ ସଙ୍କେତ ଓ ତାଙ୍କ ସ୍ୱକୀୟତାର ନିୟନ୍ତ୍ରଣାଧୀନ ଭାରତୀୟ ଚିତ୍ରଣ ପ୍ରୀତି । ଯାହା ଜୀବନଧର୍ମୀ କଳାକୃତି ରୂପେ ସ୍ୱୀକୃତି ଲାଭ କରିଥିଲେ ମଧ ତାଙ୍କ ଶିଳ୍ପୀ ଜୀବନର ଉଦ୍‌ଯାପନ ସଙ୍ଗୀତ ହୋଇ ରହିପାରିଲା ନାହିଁ । ଶିଳ୍ପୀ କି ଏକ ନିଷ୍ପତ୍ତିର ସମ୍ମୁଖୀନ ହେଲେ କେଜାଣି-ସମୟର ଖର ନିଶ୍ୱାସରେ ପୃଷ୍ଠା ଓଲଟିଗଲା । ସୃଜନୀ ସ୍ରୋତର ଅନୁକୂଳରେ ଚାଲିଥିବା ତାଙ୍କର ରଙ୍ଗ ତୂଳିକା ହଠାତ୍ ଉଜାଣି ଚାଲିଲା । ଫଳରେ ସୃଷ୍ଟିର କୋମଳତା ଦିଗହରା ହୋଇଗଲା । ଅଭିଷେକ ଅପେକ୍ଷାରେ ଥିବା ରାଜପୁତ୍ର ହୀନମନ୍ୟତା କବଳିତ-ପ୍ରତାରଣା ଓ କୂଟକପଟତାର ଶିକାର ହୋଇ ବନଚାରୀ ହେଲାଭଳି କଳାର କଳ୍ପନା, ଉପାସନା, ସାଧନା ଓ ଆରାଧନାରେ ମଜ୍ଜି ରହିଥିବା ଏ ସ୍ଥିତପ୍ରଜ୍ଞ ଚିତ୍ର ଶିଳ୍ପୀଙ୍କର ନିର୍ଦ୍ଦିଷ୍ଟ ଚଲାପଥ ହଠାତ୍ ପରିବର୍ତ୍ତିତ ହୋଇଯାଇଥିଲା ଜୀବନର ଠିକ୍ ମଧ୍ୟାହ୍ନରେ । ଛାତ୍ର ଜୀବନର ପ୍ରତିଭା ତାଙ୍କର ନିଷ୍କମ୍ପନ ଏକ ଦୀପଶିଖାରେ ପରିଣତହେବାର ବହୁପୂର୍ବରୁ ସେ ଯେ ମାନସିକ ସ୍ତରରେ କାହିଁକି ଦୋହଲି ଯାଇଥିଲେ ମୁଁ ତାହା ଚିନ୍ତାକରି ପାରୁନି । ବୋଧହୁଏ କଳାକ୍ଷେତ୍ରରେ କିଛି ନୂତନତାର ସୃଷ୍ଟିପିପାସା ଶିଳ୍ପୀଙ୍କର ସ୍ୱକୀୟତାରେ ବ୍ୟତିକ୍ରମ ଘଟାଇଥିଲା । ମୋ ଅଙ୍କନରେ ଅତିରଞ୍ଜନ ଓ ଚିତ୍ରଣରେ ଉଜ୍ଜ୍ୱଳତମ ବର୍ଣ୍ଣ ବୈପରୀତ୍ୟର ବିନିଯୋଗ କରି ମୁଁ ମୋ ନିଜର ଏକ 'ନୈରୁପ୍ୟବାଦ ଚିତ୍ରଯୁଗ ସୃଷ୍ଟି କରିଯିବି', ଏହା ହିଁ ଥିଲା ଶିଳ୍ପୀଙ୍କର ବଳବତ୍ତର ଇଛା । ମାତ୍ର ଭାରତୀୟ ପ୍ରାଚୀନ ଚିତ୍ରଧାରା ଅଙ୍କନ ଓ ଚିତ୍ରଣରେ ଯେଉଁ ମଣିକାଞ୍ଚନର ସଂଯୋଗ ଉପଲବ୍ଧି କରାଯାଏ - ଯାହାର ମଧୁରତା ଓ ମାଦକତାକୁ ଶିଳ୍ପୀ ନିଜେ ଜୀବନର ପ୍ରାୟ ଚାରିଦଶକ ଯାଏ- ଆସ୍ୱାଦନ କରି କରି ଆସିଥିଲେ - ତାକୁ ସେ ଭୁଲିଗଲେ ! ଫଳରେ କସ୍ତୁରୀମୃଗ ଭଳି ନିଜର ମହକକୁ ବାରି ନ ପାରି ଶର୍ଯ୍ୟାଶାୟୀ ହେବାଯାଏ - ବହୁଖର୍ଚ୍ଚ ସାପେକ୍ଷ ଉପାଦାନର ବିନିଯୋଗରେ -ସ୍ୱଳ୍ପ ଶ୍ରମ ଓ କମ୍ ସମୟ ଦେଇ -ଅନେକ କଳାକୃତି ସୃଷ୍ଟି କରିଗଲେ -ଜୈନ ପଟ୍ଟଚିତ୍ରଣର ଅନୁରଣନରେ - ଯାହାର ବର୍ଗୀକରଣ ସେ କରିଯାଇ ନାହାନ୍ତି । ବହୁ ଚିତ୍ରର ସ୍ରଷ୍ଟା ସ୍ୱର୍ଗତଃ

ରାଓ-ତାଙ୍କ ସୃଷ୍ଟିରେ ଆତ୍ମ ସନ୍ତୁଷ୍ଟି ପାଇପାରିନାହାନ୍ତି ବୋଲି-ଷଷ୍ଟିପୂର୍ତ୍ତି ପ୍ରଦର୍ଶନୀ ଅବସରରେ ସେ ନିଜେ ମତବ୍ୟକ୍ତ କରିଥିଲେ ।

ମୋ ସହିତ ଯେତେବେଳେ ଦେଖାହୁଏ -କହନ୍ତି-''ଆପଣ କିଛି'' ଦିପଦ କହନ୍ତୁ - ମୁଁ ଶୁଣିବି'' । ଆଜି ସେ ସ୍ୱରଶବ୍ଦ ଆଉ ଏ ପୁରରେ ନାହିଁ । ତାଙ୍କର କୃତିତ୍ୱ ଯାହା ହେଲେ ବି ଅବିସ୍ମରଣୀୟ ଓ ସାଧନା ଦୃଷ୍ଟାନ୍ତ ଯୋଗ୍ୟ । ତାଙ୍କ ଶୋକସନ୍ତପ୍ତ ପରିବାର ସହିତ ମୁଁ ଆଜି ସମଦୁଃଖୀ । ତାଙ୍କ ଅମର ଆତ୍ମାର ସଦ୍‌ଗତିହେଉ ଏବଂ ଏ ଅନାବିଳ ଆତ୍ମା ଆଉ ଥରେ କଳାକାରର ଜନ୍ମ ପାଉ । ଏହା ହିଁ ଜଣେ ଅନ୍ତରଙ୍ଗ ଛାତ୍ରବନ୍ଧୁ ପାଇଁ ମୋର କାମନା ।



## ଦୁର୍ଗାପ୍ରସାଦ ଦାସ

## ଶିଳ୍ପୀ ଚନ୍ଦ୍ରଶେଖର ରାଓ

ଓଡ଼ୀଶାର ବିଶିଷ୍ଟ ଚିତ୍ରଶିଳ୍ପୀ ଚନ୍ଦ୍ରଶେଖର ରାଓ ଆଜି ଇହ ଜଗତରେ ନାହାଁନ୍ତି । ତାଙ୍କର ଶେଷ ଦର୍ଶନ ମୋ ଆଖିରେ ଆଣିଦେଲା ଲୁହ ଓ ମୋ କଣ୍ଠରୁଦ୍ଧ କରି ପକାଇଲା । ଉପସ୍ଥିତ ଅଗଣିତ ଶିଳ୍ପୀ ଓ ଶିଳ୍ପ ରସିକଙ୍କର ଥିଲା ମଧ୍ୟ ମୋରି ଭଳି ଦଶା । ରଙ୍ଗର ଖେଳୁଓ୍ୱାଡ଼ ରାଓଙ୍କର ମରଶରୀରର ଲଲାଟରେ ଚନ୍ଦନ ଟିପା ଓ ଦେହରେ ହଳଦୀ ମଖା ହେଲା । ମରଶରୀରକୁ ଗୁରୁଦ୍ୱାରର ଗାଡ଼ି କୋଳେଇ ନେଇ ଆଗେଇ ଚାଲିଲା ପୁରୀ ସ୍ୱର୍ଗଦ୍ୱାର ଅଭିମୁଖେ । ତାହା ଥିଲା ତାଙ୍କ ଶେଷଯାତ୍ରା । ସେହି ହୃଦୟ ବିଦାରକ ଦୃଶ୍ୟ ଅବର୍ଣ୍ଣନୀୟ ।

ଓଡ଼ିଶା ଲଳିତକଳା ଏକାଡ଼େମୀ ରାଓଙ୍କୁ ବହୁ ସମ୍ମାନରେ ଭୂଷିତ କରିଥିଲା । ବହୁ ପୁରସ୍କାରର ସେ ମଧ୍ୟ ଥିଲେ ଅଧିକାରୀ । ଏହା ବ୍ୟତୀତ ସେ ବହୁ ପଦପଦବୀରେ ଅଧିଷ୍ଠିତ ଥିଲେ । ଓଡ଼ିଶାର କ୍ରାଫ୍ଟ ସେଣ୍ଟରରେ ସେ ଥିଲେ ସୁପରିଟେଣ୍ଡେଣ୍ଟ ଓ ପରେ ପଦୋନ୍ନତି ପାଇ ଡ଼େପୋଟିମେନଜର ପାହିୟାକୁ ଯାଇ ସରକାରୀ କାର୍ଯ୍ୟରୁ ଅବସର ନେଲେ ।

ସେ ଖଲିକୋଟସ୍ଥ ସରକାରୀ କଳା ବିଦ୍ୟାଳୟରେ ଚାରୁ ଓ କାରୁକଳା ଅଧ୍ୟୟନ କରିଥିଲେ । ଅଜିତ କେଶରୀ ରାୟ ଓ ରବିନାରାୟଣ ନାୟକଙ୍କର ପାରମ୍ପରିକତାର ସ୍ପର୍ଶ ତାଙ୍କ ଶିଳ୍ପୀ ଜୀବନକୁ ଋଦ୍ଧିମନ୍ତ କରିଥିଲା । ଅଧକ୍ଷ ଶରତଚନ୍ଦ୍ର ଦେଓଙ୍କ ଭଳି ଧର୍ମ ପରାୟଣ ଶିଳ୍ପୀଙ୍କର ସେ ଉପଯୁକ୍ତ ଛାତ୍ର ଥିଲେ ।

ଓଡ଼ିଶାର ପଟ୍ଟଚିତ୍ରର ପାରଂମ୍ପରିକ ଶୈଳୀରେ ସେ ଅନେକଟା ଆଧୁନିକତାର ପ୍ରଭାବ ପକାଇ ଏକ ନୂତନ ଶୈଳୀର ସନ୍ଧାନ ପାଇପାରିଥିଲେ ଏବଂ ତାହା ହିଁ ଥିଲା

ଶିଳ୍ପୀ ରାଓଙ୍କର ଚିତ୍ର ଶୈଳୀର ବିଶେଷତ୍ୱ । ତାଙ୍କର ଏହି ଚିତ୍ରଶୈଳୀ କେବଳ ଓଡ଼ିଶାରେ ନୁହେଁ ବମ୍ବେ ଓ ଦିଲ୍ଲୀର ଚିତ୍ରଦରବାରରେ ମଧ୍ୟ ଆଦୃତ ହୋଇ ପାରିଥିଲା ଓ ବହୁ ରୂପାନ୍ୱେଷୀଙ୍କର ଦୃଷ୍ଟି ଆକର୍ଷଣ କରି ପାରିଥିଲା । ରାଓଙ୍କର ରେଖା, ରଙ୍ଗ ଓ ବିଷୟବସ୍ତୁକୁ ଅନୁଧ୍ୟାନ କଲେ ତାଙ୍କ ଉପରେ ଭାରତୀୟ ଚିତ୍ରକଳାର ଯଥେଷ୍ଟ ପ୍ରଭାବ ପଡ଼ିଥିଲା ବୋଲି ଜଣାପଡ଼େ । ରାଓଙ୍କ ଚିତ୍ରର ବିଷୟବସ୍ତୁରେ କୃଷ୍ଣଙ୍କର ବିବିଧ ଲୀଳାର ଦୃଶ୍ୟ ଦେଖିବାକୁ ମିଳେ । ପରବର୍ତ୍ତୀ ପର୍ଯ୍ୟାୟରେ ସେ ସେହି ଶୈଳୀରେ ସାମାଜିକ ଚିତ୍ରାଙ୍କନ ମଧ୍ୟ କରିଅଛନ୍ତି । ସ୍ୱାଭାବିକ ଭାବରେ ରାଓଙ୍କ ରେଖା ବିନ୍ୟାସ, ରଙ୍ଗର ପ୍ରଲେପ ପ୍ରଦାନ ଶୈଳୀ ଓ ସର୍ବୋପରି ତୂଳୀଚାଳନାର ଢ଼ଙ୍ଗ ତାଙ୍କର କଳ୍ପନା ବିଳାସୀ ମନ ଓ ଦକ୍ଷତାର ପରିଚୟ ଦେଇଥାଏ । ଶିଳ୍ପକ କନା ଉପରେ ନୀଳ, ସବୁଜ, ପୀତ ଓ ଗେରୁ ରଙ୍ଗର କୋମଳ ଓ ମଧୁର ପ୍ରଲେପ ତାଙ୍କ ସରଳ ଓ ରଙ୍ଗୀନ ହୃଦୟର ପରିଚୟ ଦିଏ ।

ଭଗବାନ ତାଙ୍କ ଶୋକସନ୍ତପ୍ତ ପରିବାରଙ୍କୁ ଏ ଦୁଃଖକୁ ସହ୍ୟ କରିବା ଲାଗି ଧୈର୍ଯ୍ୟ ଦିଅନ୍ତୁ ।

■

## ବିନୋଦ ମହାରଣା

### ଚିତ୍ରସର୍ବସ୍ୱ

ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରାଓଙ୍କୁ ଭୁବନେଶ୍ୱରରେ ଚାକିରୀ କରିବା ଆଗରୁ ମୁଁ ଜାଣିଥିଲି । ସେ ବିଭିନ୍ନ ପ୍ରଦର୍ଶନୀ ମଣ୍ଡପରେ କାମ କରିବା ନିମନ୍ତେ ଆସିକାରୁ ଆସୁଥିଲେ । ସେତେବେଳେ ଆମ କେତେଜଣଙ୍କ ମଧ୍ୟରେ ଆସିକା ରାଓ ଭାବେ ପରିଚିତ ଥିଲେ । ରାଜ୍ୟ ହସ୍ତ ଓ କୁଟୀର ଶିଳ୍ପ ବିଭାଗରେ ଡ଼ିଜାଇନ୍‌ର ଭାବେ ଯୋଗଦେବା ପରେ ତାଙ୍କ ସହିତ ମୋର ବନ୍ଧୁତା ଘନିଷ୍ଠ ହୋଇଥିଲା ଓ ପରେ ସେ ରାଜ୍ୟ ହସ୍ତଶିଳ୍ପ ତାଲିମ୍ ପ୍ରତିଷ୍ଠାନର ଅଧୀକ୍ଷକ ଭାବେ ଯୋଗ ଦେଇଥିଲେ ।

ଅଫିସ ଚାକିରି ଭିତରେ ଦୁହେଁ ମିଶି ବହୁ କାର୍ଯ୍ୟ କରିଛୁ । ସେ ଜଣେ ଉତ୍ତମ ଚିତ୍ରଶିଳ୍ପୀ ଥିଲେ, ବିଶେଷ କରି ସେ ଓଡ଼ିଶାର ପାରମ୍ପରିକ ଚିତ୍ରକୁ ନୂତନ ରୂପଦେଇ ନିଜସ୍ୱ ଶୈଳୀ ସୃଷ୍ଟି କରିଥିଲେ । ତାହା ତାଙ୍କ ପାଇଁ ଓ ଓଡ଼ିଶା ପାଇଁ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ସୁଖ୍ୟାତି ଆଣିଥିଲା ।

ସେ କାହାରି ନିନ୍ଦା କରୁନଥିଲେ । ଚିତ୍ର ହିଁ ତାଙ୍କର ସର୍ବସ୍ୱ ଥିଲା । ଏଭଳି ଜଣେ ଶିଳ୍ପୀ ବନ୍ଧୁଙ୍କର ବିୟୋଗରେ ମୁଁ ମର୍ମାହତ । ଈଶ୍ୱରଙ୍କ ପାଖରେ ପ୍ରାର୍ଥନା ତାଙ୍କ ଆତ୍ମାର ସଦ୍‌ଗତି ହେଉ ।

■

# ଶିବରାମ ପାତ୍ର
## 'ଅଜରମ୍'ରୁ ଲେଖୁଛନ୍ତି

ସମ୍ମାନନୀୟ ବଂଧୁ !

ଗଲା ଜାନୁୟାରୀ ମାସ ୧୫ରେ ତମ ଆତ୍ମଜୀବନୀ 'ଚନ୍ଦ୍ରାୟନ' ପ୍ରକାଶ ପାଇଲା । ତା'ର ଉନ୍ମୋଚନ ଉତ୍ସବରେ ଯୋଗଦେବାକୁ ରାଷ୍ଟ୍ରୀୟ କଳାକେନ୍ଦ୍ରକୁ ଯାଇଥିଲୁ । ତମ ସୁଯୋଗ୍ୟ ଜ୍ୱାଇଁପୁଅ ପ୍ରିୟତମ ପ୍ରଦୋଷଙ୍କ ସରାଗ ନିର୍ଦ୍ଦେଶ ଥିଲା, ତମ ପ୍ରକାଶକ ଶତାବ୍ଦୀ ମିଡ଼ିଆର ଅନ୍ୟତମ ବିଶିଷ୍ଟ ସାହିତ୍ୟିକ ଅସିତବାବୁଙ୍କ ସାଦର ନିମନ୍ତ୍ରଣ ଥିଲା । ସେଇ ଉତ୍ସବରେ 'ଚନ୍ଦ୍ରାୟନ' କ୍ରୟ କରିବାକୁ ସୁଯୋଗ ଥିଲା, ଖଣ୍ଡେ ସଂଗ୍ରହ କରିପାରିଲୁ । ଏଇ ଗଲା ଜାନୁୟାରୀ ହିଁ ଥିଲା ଆମ ଅଧ୍ୟାପନା ଜୀବନର ଶେଷ ମାସ, ଯେଉଁଥିପାଇଁ କାଗଜପତ୍ର ଯୋଗାଡ଼ ଓ ଅନ୍ୟାନ୍ୟ ଆନୁଷ୍ଠାନିକ ଗାନ୍ଦିକା ଥିଲା । ତେଣୁ ଯଥାଶୀଘ୍ର 'ଚନ୍ଦ୍ରାୟନ' ପଢ଼ିଦେବାର ସକଳ ସଂଭାବନା ଥିବା ସତ୍ତ୍ୱେ ପଢ଼ିପାରି ନ ଥିଲୁ ।

ଆସିକାରୁ ଆମ ସଢୁଭାଇ ତମ ସୁହୃଦ୍ ବଂଧୁ ସୁବାରାଓ ଆସିଥିଲେ । ଆମେ ୨୪ ସକାଳେ ତମକୁ ଦେଖିବାକୁ ଯାଇଥିଲୁ । ତମେ ଶୋଇଥିଲ । ଦୁଃଖସୁଖ ହୋଇପାରିଲୁନି କି ତମ ବହି ସଂପର୍କରେ ଅଭିମତ ଜଣାଇ ପାରିଲୁନି । ନିଦ୍ରାବସ୍ଥାରେ ଯାହା ତମକୁ ଦେଖି ଫେରିଲୁ ।

୩୧ ଆସିଗଲା, ଅବସର ନେଲୁ । ସବୁ ବ୍ୟସ୍ତତା ଭିତରେ ସେତେବେଳକୁ ସଂପୂର୍ଣ୍ଣ ଚନ୍ଦ୍ରାୟନ ବି ପଢ଼ା ସରିଯାଇଥିଲା । ତମକୁ ଚିଠି ଆକାରେ ତମ ଆତ୍ମଜୀବନୀ ସଂପର୍କରେ ଦି'ଚାରିପଦ ଜଣାଇବା ମତଲବରେ ଥିଲୁ । ଏଭଳି ସୁନ୍ଦର ସଂପୂର୍ଣ୍ଣ ଆତ୍ମଜୀବନୀଟିଏ ଏ ଯାଏଁ କୌଣସି ଶିଳ୍ପୀଙ୍କର ବାହାରି ନଥିଲା । ଏହାର ସାହିତ୍ୟିକ ମୂଲ୍ୟ ଢେର୍ ଅଛି । ତମ ଚିତ୍ର ଓ ଆମ ଆଧୁନିକ ଓଡ଼ିଶାର ଚିତ୍ର ବିଷୟରେ ବହୁତ ଉପାଦାନ ଅଛି । ପୁସ୍ତକଟି ଯେମିତି ସୁଖପାଠ୍ୟ ସେମିତି ଉପାଦେୟ । ଦରଦୀ ଶିଳ୍ପୀର ମରମ ଗାଥା । ଯଥାଶୀଘ୍ର ବା ଯଥାସମୟରେ ମତାମତ କିନ୍ତୁ ଜଣାଇ ପାରିଲୁନି । ତମେ ଚାଲିଗଲ ! ଆମେ ଜାଣିଥିଲୁ ଯିବାପାଇଁ ତମେ ସବୁ ବନ୍ଦୋବସ୍ତ କରିସାରିଥିଲ, ତମେ ପୁଣ୍ୟାତ୍ମା । ସବୁ ସତ୍ତ୍ୱେ ତମେ ଆଉ କିଛି ଦିନ ଆମକୁ ଦେବ ବୋଲି ଆଶା କରିଥିଲୁ, ଆମେ ଠକି ହେଲୁ । ତମେ ତ ତମ ଅତିପ୍ରିୟ ପିଲାଙ୍କୁ, ଛାତ୍ରଛାତ୍ରୀଙ୍କୁ, ଚିତ୍ର ସଂଭାରକୁ, ଶିଳ୍ପୀସଂସାରକୁ, ବନ୍ଧୁମହଲକୁ ଅକ୍ଳେଶରେ ତ୍ୟଜି ଦେଇପାରିଲ । ମୋହ ତୁଟାଇ ଦେଲ । ଏ କି କଥା କଲ ବଂଧୁ ? ଭଲ ପାଇଟି କଲନି ତମେ । ଆଜି ସବୁ ମନେପଡୁଛି ! ବୁଝିଲ, ସବୁ ମନେପଡୁଛି ।

୧୯୬୬-୬୭ର କଥା । ଓଡ଼ିଶା ରୋଡ୍ ଟ୍ରାନ୍ସପୋର୍ଟ୍ କମ୍ପାନୀର ଭୁବନେଶ୍ୱର ଶାଖାର ଅଡ଼ିଟର ରୂପେ ଅବସ୍ଥାପିତ ହେଉ । ଖଲ୍ଲିକୋଟ ସାଂଧ୍ୟ ମହାବିଦ୍ୟାଳୟରୁ ଆସି ବି.ଜେ.ବି. ସାଂଧ୍ୟ ମହାବିଦ୍ୟାଳୟରେ ବି.ଏ. ଶେଷ ବର୍ଷ ପଢ଼ା ହେଲା । ସେଠେ ତମେ ଓ ପାଠୀବାବୁ ମୋତେ ଆଦର ଅଭ୍ୟର୍ଥନା କଲ । ତମେ ଦୁହେଁ କ୍ୱଳମାନ ଚିତ୍ରଶିଳ୍ପୀ । ଆମେ ଗୋଟିଏ ଜିଲ୍ଲାରୁ ଆସିଥିଲେ । ଗଞ୍ଜାମୀଙ୍କ ଯେଉଁ ବାଗ ରାଗ ଠାଣି ମାଣି ଆଚାର ବିଚାର ଭାଷାଭଙ୍ଗୀ ସବୁ କିଛି ନିଆରା, ଅନ୍ୟମାନଙ୍କଠାରୁ ଆମେ ବାରି ହୋଇଗଲେ । ରାଜଧାନୀର ସବୁ ଅଫିସ୍‌ରୁ ଆସି ପଢୁଥିବା ବୟସ୍କ ବିଦ୍ୟାର୍ଥୀଙ୍କ ସହ ମିତ୍ରତା ଜମିଲା । ଆମେ ଦାଢ଼ୀବାବୁ ରୂପେ ପରିଚିତ ଥିଲୁ । ଲମ୍ବା ଦାଢ଼ୀ ଥିଲା ବହୁବର୍ଷର ମାନସିକ ଯୋଗୁଁ । ତମେ ଦୁହେଁ ଆର୍ଟିଷ୍ଟିକ୍ ଦାଢ଼ି ରଖିଥିଲ ବୋଧେ । ସେ ସମୟର କିଛି କିଛି ସ୍ମରଣୀୟ ଅନୁଭବ ମନେଅଛି ବନ୍ଧୁ । ସେ କାଳଠୁ ତମର ଏକ ଛବି କଲେଜ ପତ୍ରିକାରୁ ସଂଗ୍ରହ କରି ସାଇତି ରଖିଛୁ । କି ସୁନ୍ଦର ସେ ଛବି । ଓଡ଼ିଆଣୀଟି ସଂଧ୍ୟାଦୀପ ଦେବାକୁ ଓଢ଼ଣା ତଳେ ଅପଣା ସୁନ୍ଦର ମୁହଁକୁ ଲୁଚାଇ ମନ୍ଥର ଗତିରେ ଜାଗ୍ରତରେ ଦାଣ୍ଡକୁ ଯାଉଛି । ଆୟ ଅଳଙ୍କାର ବେଶ ପରିପାଟୀ ସବୁଥି ପ୍ରତି ତମେ ଧ୍ୟାନ ଦେଇଛ । ଓଢ଼ଣା ତଳେ କ୍ଷୀଣ ଦୀପଶିଖାର ଆଲୋକରେ ଅଲୋକିତ ବସ୍ତ୍ରାଚଂଳ । ବନ୍ଧୁ ତମେ ଆବାଲ୍ୟ ଶିଳ୍ପୀ ଥିଲ । ଯୌବନରେ ଚିତ୍ରିତ ତମ ଏ ଜଳଛବି ନିଶ୍ଚୟ ଆକର୍ଷଣୀୟ ଓ ସଂଗ୍ରହଣୀୟ । ସେତେବେଳେ ପାଠୀ ବାବୁଙ୍କ 'ଚିୟତେ ଇତି'ର ସମୀକ୍ଷା ଆସ୍କାର 'ଆଲୋକ'ରେ କରିଥିଲୁ । କୁସୁମ ପରଶେ ପଟ ନିସ୍ତାରଣ । ସତୁରୀରେ ଭୁବନେଶ୍ୱର ଛାଡ଼ି ବ୍ରହ୍ମପୁର, ଗୁଣୁପୁର, ନବରଙ୍ଗପୁର, ବୋଲଗଡ଼ ହୋଇ ଅଠାନବେରେ ଭୁବନେଶ୍ୱର ବାହୁଡ଼ିଲାବେଳକୁ ତମେ ରାଜ୍ୟର ବିଶିଷ୍ଟ ଚିତ୍ରଶିଳ୍ପୀ । ଭାରତୀୟ ପାରଂପରିକ ଚିତ୍ରଶୈଳୀକୁ ଅବଲମ୍ବନ କରି ରଙ୍ଗରେ ରେଖାରେ ଭାବବସ୍ତୁରେ ଯେଉଁ ପରୀକ୍ଷା ନିରୀକ୍ଷା ପ୍ରୟୋଗ କଲ ତମକୁ କେବଳ ଅସାମାନ୍ୟ ସାଫଲ୍ୟ ମିଳିଲାନି ତମେ ଓଡ଼ିଶୀ ଚିତ୍ରଜଗତକୁ ନାନାଭାବେ ଧନୀ କରି ଛାଡ଼ିଲ । ଷଷ୍ଠୀପୂର୍ତ୍ତି ବେଳେ ତମର ସେ ପ୍ରଦର୍ଶନୀ ଏକ ପୂର୍ଣ୍ଣ ଭୋଜନର ଆନନ୍ଦ ଦେଇଥିଲା । ପରିପୂର୍ଣ୍ଣ ସେ ଚିତ୍ର ପ୍ରଦର୍ଶନୀ । ସବୁପୁରୁଣା ନୂଆ ଲାଗିଥିଲା । ଅନନ୍ୟ ଅଭିନବ ସେ ଅନୁଭବ । ଆଉ କେବେ ସେ ଭଳି ସନ୍ତୋଷ ମିଳିନଥିଲା । ତମ ଚିତ୍ର ସଂଗ୍ରହ କରିବାକୁ ଭାରି ଲୋଭଥିଲା, ସେ ଅବସର ଜୁଟିଲାନି । ତମେ ବହୁତ ବର୍ଷ ତଳେ ଆମ ଶଳା ବିରୁପାକ୍ଷର ଗୃହପ୍ରତିଷ୍ଠାରେ ଭେଟିଦେବାକୁ ମୋତେ ଓ ମୋ ସଢୁ ସୁବାରାଓଙ୍କୁ ଶ୍ରୀଗଙ୍ଗାଦେବୀଙ୍କ ତୈଳଚିତ୍ର ଯୋଗାଇ ଦେଇଥିଲ । ମନେଅଛି ? ସେଇଟି ଆମ ଶ୍ୱଶୁର ଗୃହର ଶୋଭା ବୃଦ୍ଧି କରୁଛି । ଭାଇ, ସବୁ ମନେପଡୁଛି ଆଜି ! ଭୁବନେଶ୍ୱର ବାହାରେ ଥିଲାବେଳେ ଯେବେ ଆସିଛୁ ବିଭିନ୍ନ ଅବସରରେ ତମର ଯେଉଁ ଅନାବିଳ ସ୍ନେହ ସୌହାର୍ଦ୍ଦ୍ୟ ପାଇଛୁ, ଭୁଲିହେବନି । ସତ୍ୟବାଦୀ ଓ ସବୁଜ ଯୁଗର କବିଏଁ ଯେପରି ଓଡ଼ିଆ ସାହିତ୍ୟରେ ନବଜାଗରଣ ସୃଷ୍ଟି

କରିଥିଲେ, ତମେ ଓ ତମ ସମଧର୍ମା ବଂଧୁମାନେ ଆଧୁନିକ ଓଡ଼ିଆ ଚିତ୍ର ଜଗତରେ ନୂଆ ନୂଆ ଆନ୍ଦୋଳନ ସୃଷ୍ଟି କରିଦେଲ । କେତେ ଚିତ୍ର ପ୍ରଦର୍ଶନୀ, କେତେ କର୍ମଶାଳା କଲ ଅନବରତ । 'ଓ୍ୱା'ମାଧ୍ୟମରେ ଭାରତ ସାରା ଘାଣ୍ଟି ପକାଇଲ, ଖେଦିଗଲ । ଜାତୀୟସ୍ତରକୁ ତମେ ସବୁ ଆମ ଚିତ୍ରଶିଳ୍ପକୁ ନେଇଗଲ । ଏ କମ୍ କଥା ନୁହଁ । ଜାତି ତମ ପାଖରେ ଋଣୀ ରହିବ । ତମେ ଶେଷ ଆଡ଼କୁ 'ଓ୍ୱା'ର ପ୍ରେସିଡେଣ୍ଟ୍ ଥିଲ । ନୁହଁ ? ପାଂଚବର୍ଷ ହୋଇଯିବ ବୋଧେ ତମେ ଦାୟିତ୍ୱରେ ରହି । ଏ ଭିତରେ ଓଡ଼ିଶାର ଚିତ୍ରସମ୍ପଦର ସମୀକ୍ଷା ନେଇ ଯେଉଁ ସବୁ ଗ୍ରନ୍ଥ ଇଂରାଜୀରେ ପ୍ରକାଶ କରିଛ ତାହା ବଡ଼ ମୂଲ୍ୟବାନ । ବିଶ୍ୱବାସୀଙ୍କ ଆଗରେ ବାଢ଼ିଦେଲ ଆମ ଶିଳ୍ପସମ୍ଭାର ବିପଣୀ । ସାବାସ୍ ବନ୍ଧୁ ସାବାସ୍ ।

ଷଷ୍ଠୀପୂର୍ତ୍ତି ଅବସରରେ, ପାନ୍ଥନିବାସରେ ବୋଧେ, ସମ୍ବର୍ଦ୍ଧନା ସଭାରେ ଭାଷଣ ଦେଇ ଏକ ସାନ ରୂପା କଲମ ଉପହାର ଦେଇଥିଲୁ । କହିଥିଲୁ ଯେ ଓଡ଼ିଶାରେ ଚିତ୍ର, ନୃତ୍ୟ, ସଂଗୀତ କ୍ଷେତ୍ରର ଶିଳ୍ପୀମାନଙ୍କ ଅବଦାନ ଢେର୍ କିନ୍ତୁ ସେମାନଙ୍କ ଶିଳ୍ପ ଓ ଅନୁଭବଗାଥା ଅକ୍ଷରରେ ଲିପିବଦ୍ଧ ହେଉନି । ସେଥିରେ ଆମେ ପଛୁଆ, ଦୁର୍ବଳ । ପାଠୀବାବୁ ଓହ୍ଲାଇଛନ୍ତି । ଇଂରାଜୀରେ ଓଡ଼ିଆରେ ଲେଖିଲେଣି । ପୁଣି ଗଳ୍ପ ଉପନ୍ୟାସ ଭ୍ରମଣକାହାଣୀ କବିତା ଓଡ଼ିଆରେ ଲେଖି ପ୍ରତିଷ୍ଠା ପ୍ରଶଂସା ପାଇଲେଣି, ପୁରସ୍କାର ତ ପାଇବେ ନିଶ୍ଚୟ । ତମେ ତ କିଛି ଲେଖୁଛ, ବହୁତ ଆଙ୍କିଛ, ଢେର୍ ଅନୁଭବ ଅଛି । ରେଖା ରଙ୍ଗ ସହ ଏଥର ଅକ୍ଷର କୀର୍ତ୍ତି କିଛି ଆଖିଦୃଶିଆ ଛାଡ଼ !

ଭାଇ, ମନେଅଛି ତମେ କିଛି ମାସ ତଳେ ତମ ଆତ୍ମଜୀବନୀ ରଚନା ନେଇ ଫୋନ୍‌ରେ ଆମେ କଥାଭାଷା ହୋଇଥିଲେ ? ୰ ଶିଳ୍ପୀଗୁରୁ ହରିଶ୍ଚରଣ ମହାପାତ୍ରଙ୍କ ସଂପର୍କରେ ଗପିଥିଲେ । ଠିକ୍ ଟାଇମ୍‌ରେ ତମ ଆତ୍ମଜୀବନୀ 'ଚନ୍ଦ୍ରାୟନ' ଦେଲ, କିନ୍ତୁ ବେଟାଇମରେ ତମେ ଚାଲିଗଲ ! ଏ କ'ଣ ଠିକ୍ କଲ ?

ବାରାନ୍ତରେ 'ଚନ୍ଦ୍ରାୟନ'ର ଚର୍ଚ୍ଚା କରିବୁ, ମନରେ ରଖିଛୁ ବନ୍ଧୁ । ଦିନେ ଆମ ବାସଭବନ 'ଅଜରମ୍'କୁ ଆସିଥିଲ । ମନେଅଛ ? ଘର ଦେଖି ଖୁସିହେଲ । କିନ୍ତୁ ପଦେ ଠୁକିଦେଲ ଜିନିଷପତ୍ର ବେଶୀ ହୋଇଯାଇଛି । ସେ ଦିନ କଥାର ମର୍ମ ବୁଝି ନଥିଲୁ । ଆଜି ବୁଝିଛୁ, ବସ୍ତୁର ବାହୁଲ୍ୟ ବିରାଟ ବନ୍ଧନ । ତମେ ଜ୍ଞାନୀ, ନିରାଡ଼ମ୍ବର ସରଳ ଜୀବନକୁ ସୁଖପାଅ । ଆମ ବଡ଼ଝିଅ ପ୍ରିୟମ୍ବଦାର ବାହାଘର ତମ ଘର ପାଖ ଜଗନ୍ନାଥ ଆଶ୍ରମରେ ଅନୁଷ୍ଠିତ ହୋଇଥିଲା । ତମେ ସପରିବାର ସେଠାକୁ ଆସି ବରକନ୍ୟାଙ୍କୁ ଆଶୀର୍ବାଦ କରିଥିଲ । ଆଲ୍‌ବମ୍‌ରେ ତମର କିଛି ଆଲୋକ ଚିତ୍ର ଦାଉ ଦାଉ ଦିଶୁଛି । ଅନେକ କଥା ସ୍ମୃତିରେ ତଥାପି ଜୀବନ୍ତ ରହିଛି ।

ରାଷ୍ଟ୍ରୀୟ କଳା କେନ୍ଦ୍ରରେ ଗଲା ୧୦ ଜାନୁୟାରୀରେ ଅନୁଷ୍ଠିତ ହୋଇଥିଲା, ଏଲିସ୍‌ବୋନର୍ ସ୍ମୃତି ବକ୍ତୃତାମାଳାର କାର୍ଯ୍ୟକ୍ରମ । ସେଠାକୁ ଭୁବନେଶ୍ୱରର ସବୁ ବିଶିଷ୍ଟ ଶିଳ୍ପୀ ଆସିଥିଲେ । ତମେ ନ ଥିଲ ସେଠେ । ସେ ସମାବେଶରେ ତମ ଉପସ୍ଥିତି ସତରେ କେତେ ମହନୀୟ ଲାଗିଥାନ୍ତା । ତମର ସେଇ ଖାଣ୍ଟି ଜୀବନ୍ତ ଶିଳ୍ପୀବ୍ୟକ୍ତିତ୍ୱର ଆକର୍ଷଣ ଅନତିକ୍ରମଣୀୟ । ସେଠୁ ଆମେ ପାଠୀବାବୁ, ନିତ୍ୟାନନ୍ଦ ମିଶ୍ର, ରାମହରି, ଡି.ଏନ୍. ଯାଇଥିଲୁ ତମକୁ ଦେଖିବାକୁ କଳିଙ୍ଗ ହସ୍‌ପିଟାଲ । ବନ୍ଧୁ, ତମେ ସେତେବେଳକୁ ଅକ୍ସିଜନ୍ ସିଲଣ୍ଡରର ସାହାଯ୍ୟ ନେଲଣି । କିନ୍ତୁ ଦେଖୁ ଦେଖୁ ବି ଆତୁରରେ 'ଏ' ପାଠୀବାବୁ !' ସମ୍ବୋଧନ କଲ । ବଳ ଉଣା ହୋଇ ଯାଇଥିଲା, ଶରୀର ତମ ଆୟତ୍ତରେ ନ ଥିଲା । ନିରବରେ ଆମେ ସମସ୍ତେ ଭାବର ବିନିମୟ କଲେ । କିଛି ସମୟ ''ଡି.ଏନ୍. ଆସିଛି ଚିହ୍ନିଲକି ? ମୁଁ ଶିବରାମ ପାତ୍ର, ଚିହ୍ନୁଛ ?' ପଚାରନ୍ତେ, କହିଲ 'ହଁ ଏବେ ପରା ପାଠୀବାବୁ ତମେ ସବୁ ଆସିଛ' ପୁଣି କହିଲ 'ଆର ଜନ୍ମରେ ସବୁ ଏକାଠି ମିଶିବା ।' ବନ୍ଧୁ ତମ ପାଖକୁ କ'ଣ ଏୟା ଶୁଣିବାକୁ ଯାଇଥିଲୁ ? କେତେ ଆଶା ଆମେ ରଖିଥିଲୁ । ତମେ ଆହୁରି ଛବି ଆଙ୍କିବ, ତମ ପରଂପରାକୁ ଆହୁରି ବଳିଷ୍ଠ କରିବ । ଲେଖନୀ ବି ଧରିବ, ଉତ୍କଳଭାରତୀଙ୍କ ଭଣ୍ଡାରକୁ ଭରି ଦେବ । ତମେ ସିଝିପାଚି ଜୀବନସଂଗ୍ରାମ କରିଛ ଶିଳ୍ପ ସାଧନା କରିଛ । ତମ ଶିଳ୍ପୀକୁଳଙ୍କ କଥା, ଗାଥା, ବ୍ୟଥା ତମ ବ୍ୟତୀତ ଆଉ କିଏ ଭଲ କହି ପାରନ୍ତା କହିଲ ?

ତମେ ଏବେ ସିଆଡ଼େ ଜମେଇଥିବ । ନୁହଁ ? — ତମର ବନ୍ଧୁ



ଭାବଚ୍ଛାସେ କୋଟିଏ ଆଶା ଅନ୍ତର କୋଣେ ଭରି ।
ପ୍ରଦୀପ ହାତେ ଅବଗୁଣ୍ଠିତ ଲକ୍ଷ ପ୍ରଦୀପ ଜାଳି ।।
ଶିଳ୍ପୀ ଚନ୍ଦ୍ରଶେଖର, ତୃତୀୟ ବର୍ଷ କଳା
ବକ୍ସି ଜଗବନ୍ଧୁ ସାନ୍ଧ୍ୟ ମହାବିଦ୍ୟାଳୟ ମୁଖପତ୍ର (୧୯୬୫-୬୬)

## ସୌରୀନ୍ଦ୍ର ବାରିକ

# ଆଧୁନିକ ପରମ୍ପରାର ପ୍ରତୀକ ଚନ୍ଦ୍ରଶେଖର

ଚନ୍ଦ୍ରଶେଖର ରାଓ ଆମକୁ ଛାଡ଼ି ସବୁଦିନ ପାଇଁ ଚାଲିଗଲେ । ଜୀବନରେ ଯାହା ଏକାନ୍ତ ସତ୍ୟ ତାହା ଘଟିଲା । ସେଥିରେ କିଛି ନୂତନତା ନାହିଁ । ମାତ୍ର ଜଣେ ବ୍ୟକ୍ତିର ବିୟୋଗରେ ମଣିଷ ସଂପର୍କରେ ଯେଉଁ କ୍ଷତି ଘଟେ ତାହା ସବୁବେଳେ ନିଆରା ପୁଣି ଅପୂରଣୀୟ । ସଂପର୍କରେ ଏହି କ୍ଷତିଟି ଅଧିକ ବ୍ୟାପକ ହୋଇଉଠେ ଯେତେବେଳେ ଦିବଙ୍ଗତ ବ୍ୟକ୍ତିଟି ଗୋଟିଏ ଶିଳ୍ପୀ ହୋଇଥାଏ । ଶିଳ୍ପୀ ଆବେଗଦଗ୍ଧ ଅହଂଟିଏ । ବିରୋଧାଭାସୀ ଅସ୍ତିତ୍ୱର ଜଟିଳ ସଂପର୍କଟିଏ । ସିଏ ଅତ୍ୟନ୍ତ ଆତ୍ମସଚେତନ, ମନୁଆ ପୁଣି ଅତ୍ୟଧିକ ସାମାଜିକ ଓ ବିଚାରବନ୍ତ । ସେ ଏକାଧାରରେ ଅହଂର ସ୍ୱାଭିମାନ ପୁଣି 'ଆମେ' ଭିତରେ ଅହଂହୀନ ବିନୟ । ସିଏ ପୁଣି ପରମ୍ପରା ସଚେତନ ତହ ତହ 'ଆଜି'ର ମୂର୍ତ୍ତିମନ୍ତ ବର୍ତ୍ତମାନତା । ସେଥିପାଇଁ ଶିଳ୍ପୀ ରସିକ; ମହାଗ୍ରହଣ ଓ ମହାସମନ୍ୱୟର ଏକ ପ୍ରତୀକ ।

ସ୍ୱର୍ଗତ ଚନ୍ଦ୍ରଶେଖର ରାଓ ଥିଲେ ଏହିପରି ଜଣେ ଶିଳ୍ପୀ । ବିନୟୀ ରସିକ । ତାଙ୍କ ବିୟୋଗ ମୋ' ପାଇଁ ଏକ ଅପୂରଣୀୟ ଶୂନ୍ୟତା ସୃଷ୍ଟିକରି ଦେଇଗଲା । କାରଣ ଗୋଟିଏ ସମୟଖଣ୍ଡରେ ପ୍ରତ୍ୟେକ ଶିଳ୍ପୀ ଜ୍ଞାତ ଅବା ଅଜ୍ଞାତ ଭାବରେ ନିଜ ନିଜ ଭିତରେ ସଂପର୍କିତ । ଏ ସଂପର୍କ ଚେତନା ସ୍ତରର । ଏଥିରେ ସ୍ଥାନ, ମାଧ୍ୟମ ଅବା ସାମାଜିକ ସ୍ଥିତିର ପ୍ରଶ୍ନ ଉଠେ ନାହିଁ । କାରଣ ପ୍ରତ୍ୟେକ ଶିଳ୍ପୀ ତା'ର ବର୍ତ୍ତମାନତା ଭିତରେ ହିଁ ବଞ୍ଚିଥାଏ । ବର୍ତ୍ତମାନତାର ସ୍ପନ୍ଦନରେ ସ୍ପନ୍ଦିତ ହୋଇ ନିଜସ୍ୱ ଢଙ୍ଗରେ ଚିରଂତନତାକୁ ଖୋଜୁଥାଏ । ଏହି ଅନ୍ୱେଷା ଭିତରେ ସେ ତା'ର ନିଜସ୍ୱ ବର୍ତ୍ତମାନତାକୁ ରୂପ ଦେଇଥାଏ । ବର୍ତ୍ତମାନର ଛନ୍ଦରେ ତା' ନିଜସ୍ୱ ବାସ୍ତବତାକୁ ଗଢୁଥାଏ । ଏହି ଗଢ଼ଣ ପ୍ରକ୍ରିୟା ଓ ଏହି ପ୍ରକ୍ରିୟା ପାଇଁ ସମସ୍ତଙ୍କର ଇଚ୍ଛମାଲି ସଂପତ୍ତି ବର୍ତ୍ତମାନ ସହ ସଂପର୍କିତ ହେବା ଯୋଗୁଁ ସବୁ ସାଂପ୍ରତିକ ଶିଳ୍ପୀ ପରସ୍ପର ଦ୍ୱାରା ପ୍ରଭାବିତ ପୁଣି ପରସ୍ପର ସହ ଆତ୍ମିକ । ଏପରି ଆତ୍ମିକ ହେବାରେ କେବଳ ସାଂପ୍ରତିକତା ନୁହେଁ ଐତିହ୍ୟବୋଧ ମଧ୍ୟ କାର୍ଯ୍ୟ କରିଥାଏ । କୌଣସି ଶିଳ୍ପୀ ବର୍ତ୍ତମାନଠାରୁ ବିଚ୍ୟୁତ ନୁହେଁ, ମାତ୍ର ସେହି ବର୍ତ୍ତମାନ ଭିତରେ ଆବଦ୍ଧ ମଧ୍ୟ ନୁହେଁ । ଶିଳ୍ପୀମନ ଅମୁହାଁ ଦେଉଳ ଅବା ବିଚ୍ଛିନ୍ନ ଦ୍ୱୀପଟିଏ ନୁହେଁ । ତା'ର ଅସ୍ତିତ୍ୱର ଚେର ପରମ୍ପରା ଭିତରକୁ ଭେଦିଯାଏ । ଶିଳ୍ପୀ ଏକ ନିରବଚ୍ଛିନ୍ନ ଧାରାରେ ହିଲ୍ଲୋଳିତ ଯିଏ ସ୍ୱତନ୍ତ୍ର ପୁଣି ସଂପର୍କିତ । ତେଣୁ ଜଣେ ଶିଳ୍ପୀର ମୃତ୍ୟୁ, ସଂପ୍ରତି ଆଉ ଜଣେ ଶିଳ୍ପୀ ପ୍ରାଣରେ ଏକ କ୍ଷତ ସୃଷ୍ଟିକରେ । କାରଣ ଶିଳ୍ପୀଚେତନାର ସାମଗ୍ରିକତାରୁ ଏହାଦ୍ୱାରା

କିଛି ହଜିଯାଏ । ସେଥିପାଇଁ, ମୋ'ପରି ଜଣେ ସାଂପ୍ରତିକ କବି ପାଖରେ ତାଙ୍କ ବିୟୋଗ ମୋ ଚେତନାରେ ଯେ ଶୂନ୍ୟତାଟିଏ ରଚି ଦେଇଯିବ, ରଙ୍ଗର କାଳିମାରେ ଛାଇ ଦେଇଯିବ ଏଥିରେ ସନ୍ଦେହ ନାହିଁ ।

ପୂର୍ବରୁ କହିଛି ମୁଁ ଚନ୍ଦ୍ରଶେଖରଙ୍କର ସମସାମୟିକ । ଗୋଟିଏ ସମୟଖଣ୍ଡରେ ନିଜ ନିଜ ମାଧମ ସାହାଯ୍ୟରେ ଆମେ ଦୁହେଁ ଥିଲୁ ସୃଷ୍ଟିଶୀଳ । ତାଙ୍କର ମାଧମ ରଙ୍ଗ କିନ୍ତୁ ମୋର ଭାଷା ଓ ଶବ୍ଦ । ମାତ୍ର ଯେଉଁ ସମୟର କଥା ମୁଁ କହୁଛି ସେ ସମୟର ବାତାବରଣରେ ଥିଲା ଆଧୁନିକତାର ଆଲୋଡ଼ନ । ସେ ସମୟ ଥିଲା ପରୀକ୍ଷାର, ନିଜକୁ ନୂଆ ଭାବରେ ପ୍ରକାଶ କରିବାର ବ୍ୟାକୁଳତା, ପରଂପରାର ଶଗଡ଼ଗୁଳାରୁ କଳାକୁ ମୁକ୍ତକରି ତାକୁ ନୂଆ ପ୍ରାଣରେ ଉଜ୍ଜୀବିତ କରିବାର ଅନ୍ୱେଷା, ସେ ଥିଲା କଳାରେ ବିପ୍ଳବର ଯୁଗ । ସାହିତ୍ୟର ଛାତ୍ର ହୋଇ ପାଶ୍ଚାତ୍ୟ ଜଗତରେ ହୋଇଥିବା ପରିବର୍ତ୍ତନ ବିଷୟରେ ସଚେତନ ହୋଇ ମୁଁ ଆମ ନିଜ ଚିତ୍ର ଜଗତ ଆଡ଼କୁ ଦେଖିଲା ବେଳକୁ ମୋ' ଆଖିରେ ଯେଉଁ କେତେଜଣ ତରୁଣ ଶିଳ୍ପୀ ଓଡ଼ିଆ ଚିତ୍ରକଳାରେ ନୂଆ ପ୍ରାଣ ଭରିବା ପାଇଁ ଅଣ୍ଟା ଭିଡ଼ି ଥିଲେ ସେମାନଙ୍କ ଭିତରେ ଥିଲେ ଏହି ଚନ୍ଦ୍ରଶେଖର ରାଓ ।

ସେତେବେଳକୁ ଅଜିତ୍ କେଶରୀ ରାୟଙ୍କର କ୍ୟୁବିକ୍ ପ୍ରଭାବିତ ଛବି ଅଂକା ସରିଥାଏ । ସଂଭାବନାର ସିନ୍ଦୁରା ଫାଟିସାରିଥାଏ । ମୁଁ ଏଠାରେ ସାଂପ୍ରତିକ ଇତିହାସ କହୁନାହିଁ । ମୁଁ କହୁଛି ଆଧୁନିକ ଚେତନାର ପ୍ରଭାବ ସଂପର୍କରେ । ଆଧୁନିକତା କେବଳ ନୂତନତା ନୁହେଁ ପରଂପରା ବିରୋଧୀ ନିର୍ମୂଳୀ ଆନ୍ତର୍ଜାତିକତା ମଧ୍ୟ ନୁହେଁ । ଏହା ଏକ ସମନ୍ୱିତ ରସିକ ମନର ଜଟିଳ ମାନସିକ ବିପ୍ଳବ । ଏହା ଏକ ଶିଳ୍ପୀର ସତ୍ୟଶୀଳ ଆତ୍ମିକ ପ୍ରକାଶ । ତା' 'ଅନୁଶୀଳତା'ର ଆବେଗଦଗ୍ଧ ବୌଦ୍ଧିକ ଉଚ୍ଚାରଣ । ଏଥିରେ ଆଦିମତା ସହ ସାଂପ୍ରତିକତା ଏକାକାର ଚନ୍ଦ୍ରଶେଖରଙ୍କର ଛବି ଦେଖି ମୁଁ ଏହି 'କୁଳଶୀଳତା'ର ସ୍ପର୍ଶ ପାଇଲି । ତାଙ୍କ ରାଧା ଚେତନାରେ କେତେ ବର୍ତ୍ତମାନର ସ୍ପର୍ଶ । ପାରଂପରିକ ଆଙ୍ଗିକର ରଙ୍ଗ ଓ ରେଖା ଭିତରେ ଭିନ୍ନତାର କେତେ ସୂଚନା, ନୂତନତାର କେତେ ସଂଭାବନା । ନୂତନତାର ଚମକ ନାହିଁ, ମାତ୍ର ବିନୟୀ ସାବଲୀଳତା ଭିତରେ ପ୍ରକାଶର ନିଜସ୍ୱତା ଫୁଟି ଉଠେ । ବିଭିନ୍ନ ରଙ୍ଗର ସମନ୍ୱୟର କୋମଳତା ଭିତରେ ଉକୁଟି ଉଠେ ଆବେଗର ଓଡ଼ିଶୀ ସୂକ୍ଷ୍ମତା । ରେଖା ଓ ରଙ୍ଗର ଛନ୍ଦରେ ଗଢ଼ିଉଠିଥିବା ଆକୃତିଗୁଡ଼ିକର ତରଳ ଘନତ୍ୱ ଭିତରେ ପ୍ରତିଧ୍ୱନିତ ହୁଏ ଗତି ଓ ବେଗର ଅକୁଣ୍ଠ ନୂପୁର । ପ୍ରତ୍ୟେକ ଚିତ୍ର ଯେପରି ଗୋଟିଏ ଗୋଟିଏ ଅନ୍ୱେଷା । ବର୍ତ୍ତମାନ ତା'ସହ ଶିଳ୍ପୀ ଅହଂର ପ୍ରତିକ୍ରିୟାର ନିଜସ୍ୱ ପ୍ରକାଶ । ଏପରି ପ୍ରକାଶରେ ନିଜ ମାଟିର ଗନ୍ଧ ପୁଣି ଦୂର ଆକାଶର ଆହ୍ୱାନ ଝଂକୃତ । ଏହାହିଁ ସୃଷ୍ଟିର ସତ୍ୟଶୀଳତା । ନୂତନର ଅନ୍ଧ ଅନୁକରଣ ନୁହେଁ, ଆବେଗୀୟ ଆତ୍ମିକରଣ ।

ଚନ୍ଦ୍ରଶେଖରଙ୍କର ଚିତ୍ରକଳା ସଂସ୍ପର୍ଶରେ ଆସି ମୁଁ ଏହି ଆତ୍ମିକତାକୁ ଅନୁଭବ କରିଥିଲି । ସିଏ ଥିଲେ ଆଧୁନିକ ଓ ପରଂପରା ଭିତରେ ଏକ ମାର୍ମିକ ଯୋଗସୂତ୍ର । ତାଙ୍କ ହାତରେ ସାଂପ୍ରତିକ ଚିତ୍ରକଳା ଓଡ଼ିଶୀ ଢଙ୍ଗରେ ଆଧୁନିକ ହୋଇଗଲା । ଶିଳ୍ପୀର ସୃଜନଶୀଳତା କେବଳ ବ୍ୟକ୍ତିଗତ କଥା, ଏହା ଗୋଟିଏ ଜାତିର ସାଂସ୍କୃତିକ ଜୀବନର ସାମଗ୍ରିକତାର ପ୍ରତୀକ ମଧ୍ୟ । ସୃଜନ ପ୍ରକ୍ରିୟା ତ ରିଲେ ଦଉଡ଼ ପରି। ଏଠାରେ ଉଭୟ ବ୍ୟକ୍ତିଗତ ଓ ସାମଗ୍ରିକ କୋଳାକୋଳି । ଚନ୍ଦ୍ରଶେଖର ତାଙ୍କ ଦଉଡ଼ ସାରି ଆମ ହାତରେ ବ୍ୟାଟନ୍ ଧରାଇ ଦେଇଛନ୍ତି । ଅନ୍ୟ ଶିଳ୍ପୀମାନେ ବର୍ତ୍ତମାନ ନିଜ ଭାବରେ ଦଉଡ଼ି ଚନ୍ଦ୍ରଶେଖରଙ୍କର ଦଉଡ଼ରେ ପୂର୍ଣ୍ଣତା ଆଣିବେ । ଏ ଦଉଡ଼ ଚାଲିଛି, ଚାଲିଥିବ, ଏହାହିଁ ଗୋଟିଏ ଜାତିର ନିର୍ଯ୍ୟାସ । ଏହା ହିଁ ସଂସ୍କୃତି । ଏହାରି ଛାପ ତାଙ୍କ ଚିତ୍ରରେ । ସେଗୁଡ଼ିକ ଯେମିତି ଆଧୁନିକତାର ଓଡ଼ିଶୀକରଣ ।

ତାଙ୍କୁ ଯେତେବେଳେ ଭେଟିଛି, ମୁଁ ଭେଟିଛି ଏକ ବିନୟୀ ଅଥଚ ଦାମ୍ଭିକ ଅହଂ ସହିତ । ସେ ଥିଲେ ସରଳ, ନିରାଡ଼ମ୍ବର ପୁଣି ଆନ୍ତରିକ । ତାଙ୍କ ଜୀବନରେ ନାଟକୀୟତା ନଥିଲା, ଥିଲା ଉଷ୍ଣତା । ସେଥିପାଇଁ ତ ତାଙ୍କ ଅଭାବ ଆଜି ଭରି ଦେଉଛି ଏତେ ଶୀତଳତା ।

ତାଙ୍କ ଆତ୍ମା ଶାନ୍ତି ପାଉ, ଈଶ୍ୱରଙ୍କ ପାଖରେ ଏତିକି ପ୍ରାର୍ଥନା ।

■

## ଶ୍ୟାମସୁନ୍ଦର ପଟ୍ଟନାୟକ
## ଶିଳ୍ପୀବନ୍ଧୁ ଚନ୍ଦ୍ରଶେଖର

ଚନ୍ଦ୍ରରାଓଙ୍କ ଦେହ ଭଲ ନାହିଁ । କ'ଣ ହୋଇଛି ଜଣା ପଡୁନି । କଥାଟି ହାଲୁକା ଭାବରେ ନେଲି । ବନ୍ଧୁ ଦିନନାଥ ପାଠୀ ତାଙ୍କର ଖବର ନିଶ୍ଚୟ ରଖିଥିବେ ଭାବି ସାକ୍ଷାତରେ ପଚାରିଲି ସେ ମଧ୍ୟ ଏକାକଥା କହିଲେ । ସବୁ ପ୍ରକାରର ପରୀକ୍ଷା ନିରୀକ୍ଷା ସ୍କାନିଂ ପରେ ମଧ୍ୟ ରୋଗ ନିରୂପଣ ହୋଇପାରିନି । ମନ କଥା ମନରେ ରହିଗଲା । ମୁଁ ଛବି ଅଂକା, ମୂର୍ତ୍ତି କାମରେ ବ୍ୟସ୍ତ ରହିଲି । ଏଇତ ମାତ୍ର କେତେ ଦିନର କଥା ଗତ ଫେବୃୟାରୀ ଚାରି ବୁଧବାର ରାତି ଟିଭିରେ ତାଙ୍କର ମୃତ୍ୟୁ ଖବର ଶୁଣି ହତବାକ୍ ହୋଇଥିଲି, ବିଶ୍ୱାସ ହେଲାନି । ତହିଁ ଆର ଦିନ ସକାଳ କାଗଜରେ ପଢ଼ିଲା ପରେ ଓଡ଼ିଶା ଲଳିତ କଳା ଏକାଡ଼େମୀର ସଂପାଦକ ଶ୍ରୀ ଚନ୍ଦ୍ରମଣିଙ୍କ ସହ ଯୋଗାଯୋଗ କରି ଜାଣିଲି ଯେ ଚନ୍ଦ୍ରରାଓଙ୍କ ମର ଶରୀର ଏକାଡ଼େମୀ ଅଫିସକୁ ଆସିଥିଲା । ତାଙ୍କର ଆତ୍ମାର ସଦ୍‌ଗତି କାମନା କରି ଏକାଡ଼େମୀର କର୍ମଚାରୀ ପୁଷ୍ପଗୁଚ୍ଛ ଦେଇ ତାଙ୍କର ମର

ଶରୀରକୁ ସ୍ୱର୍ଗଦ୍ୱାରକୁ ବିଦାୟ ଦେଇଥିଲେ । ଓଡ଼ିଶା ଲଳିତକଳା ଏକଡ଼େମୀ ତାଙ୍କୁ ଜୀବିତ ଅବସ୍ଥାରେ ମହାନ କଳାକାରଙ୍କ କଳାନୈପୁଣ୍ୟର ସମ୍ମାନ ଦେଇଥିଲେ ।

ଖଲିକୋଟ କଳା ବିଦ୍ୟାଳୟରେ ସେ ଛାତ୍ରଥିବା ଅବସ୍ଥାରେ ମୁଁ ତାଙ୍କର ଚିତ୍ରଶୈଳୀ, ରଙ୍ଗବିନ୍ୟାସ, ଗଠନ ଓ ରୂପ ଯୋଜନା ସମ୍ବନ୍ଧରେ ଉତ୍ତମ ରୂପେ ଅବହିତ ଥିଲି ଏବଂ ପରବର୍ତ୍ତୀ ପର୍ଯ୍ୟାୟରେ ଚିତ୍ରକଳାରେ ଯେଉଁ ଅଭିନବ ପରିବର୍ତ୍ତନ ହେଲା ତାକୁ ମଧ୍ୟ ମୁଁ ଅନୁଭବ କରିଛି । ସ୍ୱର୍ଗୀୟ ଶିଳ୍ପୀ ବନ୍ଧୁ ଚନ୍ଦ୍ରଶେଖର ଭାରତୀୟ ତଥା ଉତ୍କଳୀୟ କଳାର ପାରମ୍ପରିକ ବିଷୟବସ୍ତୁକୁ ଆଧାରକରି ସ୍ୱକୀୟ ଢଙ୍ଗରେ ଚମତ୍କାର ରୂପରେ ପ୍ରତିପାଦନ କରିବାରେ ଅଦ୍ୱିତୀୟ ଶିଳ୍ପୀ । ସ୍ୱର୍ଗୀୟ ଚନ୍ଦ୍ର ରାଓ ଓ ତାଙ୍କ ଛବି ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଆଜି ତାଂକର ଅନୁପସ୍ଥିତିରେ ମଧ୍ୟ ଛବି ମଧ୍ୟରେ ତାଙ୍କର ଉପସ୍ଥିତି ଅନୁଭବ କରିହୁଏ । ସେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ରଂଗ ଓ ତୂଳୀକୁ ଚଳଚଞ୍ଚଳ ରଖିବାକୁ ପ୍ରୟାସୀ ଥିଲେ । ବିଧିର ବିଧାନକୁ ଉଲ୍ଲଙ୍ଘନ କରିବା କାହା ହାତରେ ନାହିଁ । ଶିଳ୍ପୀଙ୍କ ଦେହ ପଞ୍ଚମହାଭୂତରେ ମିଶିଯାଇଛି ହେଲେ କଳା ପାଇଁ ଉତ୍ସର୍ଗୀକୃତ ତାଂକର ଜୀବନ ନୂତନଯୁଗର ପୀଢ଼ିକୁ ପ୍ରୋତ୍ସାହନ ଦେବ ଓ ଅନୁପ୍ରାଣିତ କରିବ ।

ମୁଁ ମୋର ବନ୍ଧୁ ଚନ୍ଦ୍ରଶେଖର ରାଓଙ୍କର ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରୁଛି ।

## ଡି.ଏନ୍. ରାଓ

## ଭଡ଼ାଘର ଆଉ ଦରକାର ନାହିଁ

ସେଦିନ ଥିଲା ଏକ ଅଭାବନୀୟ ପ୍ରଭାତ । ଫୋନ୍‌ରେ ଏକ ପରିଚିତ କଣ୍ଠସ୍ୱର ଅହେତୁକ ଗମ୍ଭୀର ପାଲଟି ଯାଇଥିଲା । ମୁଁ ମଧ୍ୟ ଆଶଂକାରେ ଶୁଣୁଥିଲି ଏବଂ ଯେଉଁ ସତ୍ୟ ମୋର କାନରେ ପ୍ରତିଧ୍ୱନିତ ହେଉଥିଲା ତାହା ହେଲା, ଆନ୍ନା ଆଉ ନାହାନ୍ତି । ବାକ୍‌ଶକ୍ତି ହରାଇ ବସିଥିଲି କିଛି ସମୟ ପାଇଁ । ଅନୁଷ୍ଠାନର ମୁଖ୍ୟ ହିସାବରେ ମୋତେ କିଛି କରିବାକୁ ପଡ଼ିବ । ପାଖରେ କେହି ନାହାନ୍ତି । ଶୂନ୍ୟତା କେତେ କଟୁ ତାହା ମଧ୍ୟ ମର୍ମେ ମର୍ମେ ଅନୁଭବ କରୁଥିଲି ।

ପ୍ରିୟ ଛାତ୍ରଙ୍କୁ କହିଲି ଅଘଟଣ ବିଷୟରେ ଏବଂ ଲାଗିପଡ଼ିଲୁ ତାଙ୍କ ଶୋକସଭା ଆୟୋଜନରେ । ଗୋଟିଏ ଲାଇଫ୍ ସାଇଜ୍ ସ୍କେଚ୍ ପାଖରେ ପିଲାମାନେ ଆଣ୍ଠୁମାଡ଼ି ବସିଛନ୍ତି । ଶିକ୍ଷକବନ୍ଧୁମାନେ ଆସିବାପରେ ୧୦.୩୦ ବେଳକୁ ଶୋକସଭା । ଯେଉଁଠି ସଭା ସେଇଠି ୪୫ ବର୍ଷ ତଳେ ସେ ଥିଲେ ଜଣେ ଛାତ୍ର ।

ଅପରାହ୍ନରେ କିରଣ ଯେମିତି ମଳିନ, ଜୁଇ ମଧ୍ୟ ସେମିତି ଥମ ଆସୁଛି। ସମୁଦ୍ରରୁ ବହୁଥିବା ପବନରେ ଅଗ୍ନିଶିଖା କୁଣ୍ଡଳି ଖାଉଥିଲା। ସ୍ୱର୍ଗଦ୍ୱାରର ଧୂମକୁଣ୍ଡଳୀ ମଧ୍ୟରେ ମୁଁ ଖୋଜୁଥିଲି ମୋ ପ୍ରିୟ ଆନ୍ନାଙ୍କୁ। ସେ କିନ୍ତୁ ମୋତେ ଅପେକ୍ଷା କରି ନ ଥିଲେ। କେବଳ କେତେ ଖଣ୍ଡ ଅସ୍ଥିକୁ ଦେଖି ଆଙ୍କୁଥିଲି ସେଇ ପରିଚିତ ମଣିଷଟିକୁ। ଦୁଇ ଆଖିରୁ ବହୁଥିବା ଲୁହ ଦୁଇକୂଳ ଲଘି ଆସିଲା ଯେତେବେଳେ ତାଙ୍କ ସମ୍ବନ୍ଧି ଚନ୍ଦନ କାଠ ଖଣ୍ଡେ ବଢ଼ାଇ ଦେଇ କହିଲେ ରାଓବାବୁ ! ଏ ଖଣ୍ଡକ ଆପଣଙ୍କ ପାଇଁ ଥିଲା। ଯେମିତି ଦୀର୍ଘ ୪୦ ବର୍ଷର ସଂପର୍କରେ ଏ କାଠ ଖଣ୍ଡକ ପୂର୍ଣ୍ଣଚ୍ଛେଦ ଟାଣିଦେଲା।

ମୋର ପ୍ରଥମ ଦେଖାହୁଏ ଲେଖିକା ଷ୍ଟୁଡ଼ିଓରେ, ତାହା ଥିଲା ବିନ୍ଦୁସାଗର କୂଳରେ। ଦିନନାଥ ପାଠୀ, ଚନ୍ଦ୍ରଶେଖର ରାଓ ଓ କାଶୀନାଥ ଜେନାଙ୍କର ତାହା ଥିଲା କଳା ସାଧନା କେନ୍ଦ୍ର। ୧୯୬୪ ମସିହାରୁ ଏହି ଆର୍ଟ୍ ଷ୍ଟୁଡ଼ିଓ ସହିତ ମୋର ସଂପର୍କ। ଛବି ଦେଖିବାକୁ ଅଦମ୍ୟ ଆଗ୍ରହ ମୋତେ ଟାଣି ନିଏ ଏବଂ ନିଜ ମଧ୍ୟରେ ଥିବା ଶିଳ୍ପୀ ସତ୍ତାଟି ଉଙ୍କିମାରେ। ସଂପର୍କର ସେତୁଟିଏ ବାନ୍ଧି ହୋଇଯାଏ ଆନ୍ନାଙ୍କ ସହିତ। ସେହି ଦିନଠାରୁ କେବେ ଅଲଗା ହୋଇନାହୁଁ। ଆହୁରି ନିକଟତର ହୋଇଛୁ। ପାରିବାରିକ ସଂପର୍କ ମଧ୍ୟ ଗାଢ଼ ହୋଇଛି। ମୋର ପୁଅମାନେ ତାଙ୍କୁ ବଡ଼ବାପା ବୋଲି ସମ୍ବୋଧନ କରନ୍ତି। ଥରେ ଥରେ ଟିଙ୍କୁ, ଶିବା ଦଉଡ଼ି ଆସି କୁହନ୍ତି ବଡ଼ ବାପା ଆସୁଛନ୍ତି, ମୁଁ ଚମକି ପଡ଼ି ପଚାରେ କିଏ ? ସେ ନାଁ ଧରି କହିଲେ ଜାଣେ। କାରଣ ମୋର ମଧ୍ୟ ବଡ଼ଭାଇ ଅଛନ୍ତି। ମୁଁ କେବେ ତାଙ୍କୁ ନାଁ ଧରି ଡ଼ାକି ନାହିଁ, କେବଳ ଆନ୍ନା, ଆନିୟା ବୋଲି ସମ୍ବୋଧନ କରିଛି। ତାଙ୍କ ପିଲାମାନେ ମଧ୍ୟ ମୋତେ ଚିନ୍ନାନା (ସାନବାପା) ବୋଲି ସମ୍ବୋଧନ କରନ୍ତି। ଉଭୟ ଗୋଟିଏ ପରିବାର ସଦସ୍ୟ ଭାବେ ଚଳି ଆସିଛୁ।

କଳା ମହାବିଦ୍ୟାଳୟରେ (ସରକାରୀ ଚାରୁକଳା ମହାବିଦ୍ୟାଳୟ ଖଲ୍ଲିକୋଟ) ଅଧ୍ୟାପନା କରିବାର ଏକ ମହାନ୍ ଆକାଂକ୍ଷା ତାଙ୍କ ମଧ୍ୟରେ ଉଙ୍କି ମାରୁଥିଲା। ୧୯୬୯ ମସିହାରେ ଅଧ୍ୟାପକ ହେବାପାଇଁ ଚେଷ୍ଟାକରି ସେଥିରେ ସେ ଅକୃତକାର୍ଯ୍ୟ ହୋଇଥିଲେ। ଅଭିଳାଷ ଥିଲା ଅଧ୍ୟାପନା ମାଧ୍ୟମରେ ଛାତ୍ରଛାତ୍ରୀ ସୃଷ୍ଟି କରିବା। ମୋର ମଧ୍ୟ ଆନ୍ତରିକ ଇଚ୍ଛା ଥିଲା ଆନ୍ନା ଅଧ୍ୟାପକ ହୁଅନ୍ତୁ। ତାଙ୍କର ଏହି ଅପୂରଣୀୟ ଇଚ୍ଛା ତାଙ୍କ ମଧ୍ୟରେ ପ୍ରଳୟବହ୍ନି ସୃଷ୍ଟି କରିଥିଲା ଏବଂ ତାହା ତାଙ୍କ ଜୀବନରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ମୋଡ଼ ଆଣିଦେଇଥିଲା।

ସମୟକ୍ରମେ ୧୯୮୪ ମସିହାରେ ଓଡ଼ିଶାର ଗୌରବ ଦ୍ୱିତୀୟ କଳା ମହାବିଦ୍ୟାଳୟ ଭୁବନେଶ୍ୱରରେ ପ୍ରତିଷ୍ଠା ହେଲା। ସେଥିରେ ବନ୍ଧୁ ଡକ୍ଟର ଦିନନାଥ ପାଠୀ ଅଧ୍ୟକ୍ଷ ହେଲେ। ମୁଁ ମଧ୍ୟ ଅଧ୍ୟାପକ ଭାବେ କାର୍ଯ୍ୟଭାର ଗ୍ରହଣ କଲି। ଏହି ସମୟରେ ଆମେ ସବୁବେଳେ ତାଙ୍କୁ ମହାବିଦ୍ୟାଳୟକୁ ଆମନ୍ତ୍ରଣ କରୁ। ସେ ମଧ୍ୟ ଆସନ୍ତି, ତାଙ୍କର

ବହୁମୂଲ୍ୟ ଉପଦେଶ ଦିଅନ୍ତି । ସେତେବେଳର ସମସ୍ତ ଛାତ୍ରଛାତ୍ରୀଙ୍କର ସେ ଜଣେ ପ୍ରିୟ ଶିକ୍ଷକ । ସେ ଯେମିତି କଳା ସୃଷ୍ଟି କରନ୍ତି, ତାଙ୍କର ଛବିର ଚରିତ୍ରଗୁଡ଼ିକୁ ଅଧ୍ୟୟନ କରନ୍ତି ସେମିତି ପିଲାମାନଙ୍କୁ ମଧ୍ୟ ଅଧ୍ୟାପନା ଦିଅନ୍ତି । ପିଲାମାନଙ୍କର ଦକ୍ଷତା ପରିସ୍ଫୁଟ ହୁଏ । ଆଜି ସେହିମାନଙ୍କ ମଧ୍ୟରୁ ଅନେକେ ଦେଶବିଦେଶରେ ପ୍ରତିଷ୍ଠିତ । ସେମାନେ ତାଙ୍କୁ ଭକ୍ତି ଶ୍ରଦ୍ଧା ଓ ସମ୍ମାନ ଦେଇ ଆସୁଥିବେ । ମୋ ଭାଷାରେ ସେ ଶିକ୍ଷକଙ୍କର ଶିକ୍ଷକ ।

୧୯୬୯ ମସିହାରେ ଓ୍ୱାର୍କିଙ୍ଗ ଆର୍ଟିଷ୍ଟ ଆସୋସିଏସନ୍(ଓ୍ୱା)ର ମୂଳଦୁଆ ପଡ଼ିଥିଲା । ପୂର୍ଣ୍ଣରୂପ ନେଲା ୧୯୭୩ ମସିହାରେ । ସେତେବେଳେ ମାତ୍ର ୮ ଜଣ ସଭ୍ୟଙ୍କୁ ନେଇ ଗଢ଼ିଉଠିଥିବା ଏହି ଅନୁଷ୍ଠାନରେ ସର୍ବଶ୍ରୀ ଅନନ୍ତ ପଣ୍ଡା, ଦିନନାଥ ପାଠୀ, ଜେ.ପି. ଦାସ (ଆଇ. ଏ.ଏସ୍.), କାଶୀନାଥ ଜେନା, ଦୁର୍ଗା ପଣ୍ଡା, ପୁଷ୍ପା ଜୈନ୍, ବି. ଦଣ୍ଡପାଣି ଓ ମୁଁ । ଏହାର ଲକ୍ଷ୍ୟ ଥିଲା ଓଡ଼ିଶାର ସମସାମୟିକ କଳା ଓ କଳାକାରଙ୍କୁ ପ୍ରୋତ୍ସାହନ ଦେବା । ଏହି ଅନୁଷ୍ଠାନ ମାଧ୍ୟମରେ ଆମେ ପ୍ରଦର୍ଶନୀ କଲୁ । ଏହାର ସମାଚାର ସେ ପତ୍ରପତ୍ରିକା ପୃଷ୍ଠାରୁ ପଢ଼ି ବହୁ ଆଗ୍ରହରେ ମୋ ପାଖକୁ ଚିଠି ଲେଖି ତାଙ୍କ ଛବି ପ୍ରଦର୍ଶନୀରେ ପ୍ରଦର୍ଶିତ କରିବା ପାଇଁ ଇଚ୍ଛା ପ୍ରକାଶ କଲେ । କାରଣ ସେସମୟରେ ସିଏ ଆସିକାରେ ସପରିବାର ରହୁଥିଲେ । ତାଙ୍କର ସେହି ଇଚ୍ଛାକୁ ସମ୍ମାନ ଜଣାଇ ମୁଁ ଆସିକା ଯାଏ ଏବଂ ତାଙ୍କର ଛବି ଧରି ଫେରେ । ପ୍ରତ୍ୟେକଥର ଏହିଭଳି ମୁଁ ଛବି ଆଣିବା ପାଇଁ ଯାଇଥାଏ । ଆମେ କଟକ, ଭବୁନେଶ୍ୱର, ରାଉରକେଲା, ବ୍ରହ୍ମପୁର, ପରେ ପରେ ଓଡ଼ିଶା ବାହାରେ ଦିଲ୍ଲୀ, ବମ୍ବେ, ମାଡ୍ରାସ, ଚଣ୍ଡିଗଡ଼, ବାଙ୍ଗାଲୋର, ବନାରସ, କଲିକତା ଆଦି ଅନେକ ସହରରେ ପ୍ରଦର୍ଶନୀ କରିଛୁ । ସେ ମଧ୍ୟ ସମୟ ପାଇଲେ ଆମ ସହିତ ଆସି ସହଯୋଗ କରନ୍ତି ଓ ଆସରରେ ଯୋଗ ଦିଅନ୍ତି । ବନ୍ଧୁ ଦିନନାଥ ପାଠୀ ଯାହା ନିର୍ଦ୍ଦେଶ ଦିଅନ୍ତି ମୁଁ ତାଙ୍କୁ ଜଣାଏ ଏବଂ ତାଙ୍କ ଅନୁରୋଧ ମଧ୍ୟ ରକ୍ଷା କରେ । ମୁଁ ଡାକବାଲାଟିଏ ପାଲଟି ଯାଇଥାଏ ।

ଆମ ସହିତ ଓଡ଼ିଶାର କଳା ଆନ୍ଦୋଳନରେ ଜଣେ କର୍ମୀ ଭାବେ ସବୁବେଳେ ରହିଥିବାରୁ ଆମଠାରୁ ଦୂରରେ ରହି ନିଃସଙ୍ଗ ଅନୁଭବ କରୁଥିଲେ । ସବୁବେଳେ କହୁଥିଲେ ମୋତେ ଭୁବନେଶ୍ୱର ନେଇଯାଅ । ତାଙ୍କର ଇଚ୍ଛା ଫଳବତୀ ହେଲା । ସୁଯୋଗ ମିଳିଲା ୧୯୮୦ ମସିହାରେ । ଭୁବନେଶ୍ୱର ଆସିବା ପାଇଁ ଯେତିକି ଆଗ୍ରହ ସେତିକି ବ୍ୟସ୍ତ ମଧ୍ୟ ହେଉଥାନ୍ତି । କହିଲେ, ଭୁବନେଶ୍ୱର ଆଉ ସେ ଭୁବନେଶ୍ୱର ହୋଇ ନାହିଁ , ଗଲେ କେଉଁଠି ରହିବି ? ଏହି ସମୟରେ ମୁଁ ବି.ଜେ.ବି. କଲେଜ ପ୍ରାଣୀ ବିଭାଗ ଆର୍ଟିଷ୍ଟ ଥିଲି, ମୋତେ ସରକାରୀ ଘର ମିଳିଲା, ମୁଁ ମଧ୍ୟ ତାହା ଆନ୍ନାଙ୍କୁ ଜଣାଇଲି । ସେ କହିଲେ ତମ ସାନିଟୋରିୟମ ବିଲ୍‌ଡ଼ିଙ୍ଗ୍‌ରେ ଥିବା ଘରଟି ମୋ ପାଇଁ ରଖ । ହାତଛଡ଼ା କର ନାହିଁ । ମୁଁ ମଧ୍ୟ ଆଦେଶାତ୍ମକ ଅନୁରୋଧ ରକ୍ଷା କରି ଦୁଇମାସ ଭଡ଼ାଦେଇ ରଖିଥିଲି ।

ଆନ୍ନା ! ଏଇ ଅଳ୍ପଦିନ ତଳେ କଳିଙ୍ଗ ହସ୍‌ପିଟାଲ୍‌ରେ କହିଥିଲେ ନା ! ଆର ଜନ୍ମରେ ପୁଣି ଏକାଠି ମିଳିତ ହେବା, ଛବି ଆଙ୍କିବା, ପ୍ରଦର୍ଶନୀ କରିବା । ହେ ଆନ୍ନାୟା ଏଥର କିନ୍ତୁ ମୁଁ ଆଉ ଭଡ଼ା ଘରେ ରହିବି ନାହିଁ । ଆପଣଙ୍କ ପାଖରେ ରହିବି । ଭଡ଼ାଘର ଆଉ ଖୋଜିବା ଦରକାର ନାହିଁ । ଅପେକ୍ଷା କରନ୍ତୁ ମୁଁ ମଧ ଆପଣଙ୍କ ପଛେ ପଛେ ଆସୁଛି ।





## ନିରଂଜନ ମହାନ୍ତି

### ଏଇତ ଜୀବନ

ଚନ୍ଦ୍ରଶେଖର ରାଓ ଚାଲିଗଲେ । ପାରିବାରିକ ସ୍ତରରୁ ଆରମ୍ଭ କରି ବ୍ୟକ୍ତିଗତ ସ୍ତର ପର୍ଯ୍ୟନ୍ତ ସବୁଠି ଗୋଟିଏ ଶୂନ୍ୟସ୍ଥାନ, ଗୋଟିଏ ଅଭାବ । ସେ କ୍ୟାନ୍‌ସରରେ ଆକ୍ରାନ୍ତ ହେବା କଥା ରାମହରି ଠାରୁ ଶୁଣି ମନ ଖରାପ ହୋଇଗଲା । ମନେହେଉଥିଲା ଆଉ କେଇଟା ମାତ୍ର ଦିନ ! ଆଉ ଦେଖୁ ଦେଖୁ ସେ ଦିନଟି ମଧ୍ୟ ଆସି ହାଜର ହୋଇଗଲା । ଆମେ ସମସ୍ତେ କେତେ ନିଃସହାୟ, ନା ! ତଥାପି ତ ବଞ୍ଚିବାକୁ ପଡ଼ିବ, ଅତୀତକୁ ନେଇ ଅତୀତର ସ୍ମୃତିକୁ ନେଇ ଅତୀତକୁ ଅନୁରଣିତ କରିଥିବା କେତେ ସ୍ୱରକୁ ନେଇ, କେତେ ମୁହଁର ଛାପକୁ ନେଇ ।

ଚନ୍ଦ୍ରବାବୁଙ୍କ ସହ ମୋର ପରିଚୟ ଅନେକ ଦିନର । ମୁଁ ଆସିକା ବିଜ୍ଞାନ ମହାବିଦ୍ୟାଳୟରେ ଇଂରାଜୀ ବିଭାଗରେ ଅଧ୍ୟାପକ ଚାକିରୀ ଜୀବନ ଆରମ୍ଭ କରିବାଠାରୁ ଚନ୍ଦ୍ରବାବୁ ଟେକ୍‌ନିକାଲ ସ୍କୁଲରେ ଆର୍ଟ ଟିଚର୍ ଥିଲେ । ସେହିଦିନ ଠାରୁ ହିଁ ମୁଁ ତାଙ୍କ କଳାକୃତି ସହ, ତାଙ୍କ ବ୍ୟକ୍ତିତ୍ୱ ସହ ପରିଚିତ । ତାଙ୍କ ସରଳ, ନିରାଡ଼ମ୍ବର, ଅକପଟ ବ୍ୟକ୍ତିତ୍ୱ ମୋର କାହିଁକି, ପ୍ରାୟ ସମସ୍ତଙ୍କୁ ମୁଗ୍ଧ କରି ଆପଣାର କରି ପାରିଥିଲା । .

ରାମହରିଙ୍କ ମାଧ୍ୟମରେ ମୋର ଚନ୍ଦ୍ରବାବୁଙ୍କ ସହ ବନ୍ଧୁତ୍ୱ ଘନିଷ୍ଠ ହୁଏ । ତାଙ୍କ ଘରକୁ ଯାଇ ଚା'ପିଇବା, ସଦ୍ୟ ପ୍ରସ୍ତୁତ କଳା କୃତି ଦେଖିବା, କଳା ସମ୍ପର୍କିତ

ଆଲୋଚନା କରିବା, ଓଡ଼ିଶାରେ କଳାର ଆଦର କିପରି ବଢ଼ିପାରିବ ସେ ବିଷୟରେ ଆଲୋଚନା କରିବା- ଇତ୍ୟାଦି ଆମ ଆସରର ମୁଖ୍ୟ ଆଲୋଚନାର ବସ୍ତୁ ହୋଇଥାଏ । ଚନ୍ଦ୍ରବାବୁଙ୍କ ବଦଳି ତା'ପରେ ଭୁବନେଶ୍ୱରକୁ ହୋଇଛି । ଭୁବନେଶ୍ୱର ରହଣି କାଳ ଭିତରେ ଯେବେ ମୋ ସହ ତାଙ୍କର ସାକ୍ଷାତ୍ ହୋଇଛି ସେହି ଆନ୍ତରିକତା, ସେହି ସ୍ନେହ, ତାଙ୍କ ପାଖରୁ ମୁଁ ପାଇଛି । ସବୁ ଯୁବ କଳାକାରଙ୍କ ଠାରୁ ଚନ୍ଦ୍ରବାବୁଙ୍କ ଗୁଣଗାନ କରିବା ଶୁଣି ଆନନ୍ଦିତ ହୋଇଛି । ପୃଥିବୀର ମୂଲ୍ୟବୋଧ ଯେଉଁଠି ପହଞ୍ଚୁ ନା କାହିଁକି ଆମେ ଯେତେ ବସ୍ତୁବାଦୀ, ବାସ୍ତବବାଦୀ ହେଉ ନା କାହିଁକି, ଗୁଣୀ ଲୋକ ଓ କଳାକାରଙ୍କୁ ଯଥାର୍ଥ ସମ୍ମାନ ଦେବା ଗୋଟିଏ କ୍ରମ ବର୍ଦ୍ଧିଷ୍ଣୁ ଜାତିର ଲକ୍ଷଣ । ମୋର କେଉଁଠି କବିତା ପ୍ରକାଶ ହୋଇଥିଲେ, ଚନ୍ଦ୍ରବାବୁ ଦେଖା ହେଲେ ସହାନୁଭୂତିଶୀଳ ଆଖିରେ ଅନାଇ, ମୋତେ ସ୍ୱାଗତ କରିଥାନ୍ତି । ଏତେ ବର୍ଷ ଭିତରେ ମୁଁ ତାଙ୍କ ରାଗ କିମ୍ବା ଅହଂକାର ଦେଖି ନାହିଁ ।

ଚନ୍ଦ୍ରବାବୁ ଚାଲିଯିବା ଦ୍ୱାରା କଳା ଜଗତରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି ହୋଇଛି ତାହା ପୂରଣ ହେବାର ନୁହେଁ । ତାଙ୍କ କଳାକୃତିରେ ଏକ ସ୍ୱାତନ୍ତ୍ର୍ୟତା ରହିଛି ଯାହା ତାଙ୍କ ବହୁମୁଖୀ ପ୍ରତିଭାକୁ ପରିପ୍ରକାଶ କରିବାରେ ସକ୍ଷମ । ପାରମ୍ପରିକ ଶୈଳୀ ସହ ଆଧୁନିକ ଶୈଳୀର ମିଶ୍ରଣ ତାଙ୍କ କଳା କୃତିର ଏକ ପ୍ରଧାନ ଲକ୍ଷଣ । ମିଶ୍ରଣ ଏତେ ନିବିଡ଼ ଓ ଆନ୍ତରିକ ଯେ କେଉଁଟି ଆଧୁନିକ ଓ କେଉଁଟି ପାରମ୍ପରିକ ବୁଝିବା କଷ୍ଟ । ତଥାପି କଳାକୃତିରେ ତାଙ୍କ ହାତର ସ୍ପର୍ଶ ଓ ତୁଳୀର ସ୍ପର୍ଶ ଫୁଟି ଉଠିଥାଏ । ମୋର KRISHNA ଏକ ଦୀର୍ଘ କବିତା ପୁସ୍ତକ ଆକାରରେ ପ୍ରକାଶ ହେବା କଥାହେଲା ବେଳକୁ ରାମହରି ମୋତେ କହିଥିଲେ ଯେ କବିତାଟି ଏତେ ନିରାଡ଼ମ୍ବର ଓ ସହଜ ଯେ, ମଝିରେ ମଝିରେ ଲାଇନ୍ ଡ୍ରଇଂ ଦେଲେ ଭଲ ଲାଗିବ । ବଂଧୁ ଦିନନାଥ ପାଠୀ, ଡି.ଏନ୍. ରାଓ, ଚନ୍ଦ୍ରଶେଖର ରାଓ । ଯେଉଁମାନେ ଓଡ଼ିଶାର କଳାକୁ ଏକ ସ୍ୱୀକୃତି ପ୍ରଦାନ କରିବାରେ ସହାୟକ ହୋଇଛନ୍ତି, ମୋ କବିତା ବହିର ସୌନ୍ଦର୍ଯ୍ୟ ବଢ଼ାଇବା ପାଇଁ ତାଙ୍କ କଳାକୃତି ଦେଇ ପାରିବେତ ? ସେଇ ଗୋଟିଏ ଅନୁରୋଧ ଚନ୍ଦ୍ରବାବୁଙ୍କ କାନରେ ପହଞ୍ଚିଲା କ୍ଷଣି, ସେ ରାଜି ହୋଇଯାଇଥିଲେ ଏବଂ KRISHNA ପାଇଁ ଦୁଇଗୋଟି ଲାଇନ୍ ଡ୍ରଇଂ ଦେଇଥିଲେ । ଏପରି ଜଣେ ବଂଧୁ ଓ କଳାକାରଙ୍କୁ ମୁଁ ଯେତିକି ହରାଇଛି, ତାଠାରୁ ଅଧିକ ହରାଇଛି ଓଡ଼ିଶା ଓ ଯୁବପିଢ଼ିର କଳାକାରମାନେ । ଚନ୍ଦ୍ରବାବୁଙ୍କ ଦେହ ନାହିଁ ଆମ ଭିତରେ, ତାଙ୍କ ମନ, ତାଙ୍କ ହୃଦୟ ଓ ଆତ୍ମା ଆମ ସମସ୍ତଙ୍କ ଭିତରେ ପକ୍ଷୀର କାକଳି ଭଳି ବିଞ୍ଚି ହୋଇ ରହି ଆମ ସମସ୍ତଙ୍କୁ ବଞ୍ଚିବାକୁ ଓ ଜୀବନକୁ ଆହୁରି ଅଧିକ ଭଲ ପାଇବାକୁ ଆହ୍ୱାନ କରୁଛନ୍ତି । ସେ ଅମର ଆତ୍ମାର ସଦ୍‌ଗତି କାମନା କରୁଛି ! ■

## ଅସୀମ ବସୁ

# ଆସ୍କା ରାଓ ମୋ ସ୍ମୃତିର, ଅନୁଭୂତିର

ଚନ୍ଦ୍ରଶେଖର ନାଆଁକୁ ନେଇ ସେଦିନ ଭଳି ଆଉ ପର୍ଯ୍ୟାଲୋଚନା କରିବାର ଦିନ ଆଜି ନୁହେଁ । ସେଦିନ କହିଲେ ଆସ୍କା ରାଓର ଷାଠିଏ ବର୍ଷ ପୂର୍ତ୍ତି ଉପଲକ୍ଷେ ପାନ୍ଥନିବାସର ସଭାକକ୍ଷରେ ଅନୁଷ୍ଠିତ ସଭା ଦିନର କଥା । ଆଜି ଚନ୍ଦ୍ରଶେଖର ଆଉ ଆମ ଗହଣରେ ନାହିଁ । ହେଲେ ତାର ସ୍ମୃତି ସବୁ ଆମ ପାଖରେ ଉଜ୍ଜ୍ୱଳ ସ୍ଫଟିକ ଭଳି ଝଟକୁଛି ।

ଚନ୍ଦ୍ରଶେଖର ରାଓକୁ ମୁଁ ତା ଅସାକ୍ଷାତରେ ଆସ୍କାରାଓ ବୋଲି ଡାକୁଥିଲି । ମୋର ଅନୁଜ ପ୍ରତିମ ଦୁଇଭାଇ -ଚନ୍ଦ୍ର ଓ ଡି.ଏନ୍. । ଜଣେ ବିଜେବି କଲେଜରେ ତ ଅନ୍ୟ ଜଣେ ଆସ୍କାରେ, ଦିନନାଥ ମାଧ୍ୟମରେ ଦୁଇ ଜଣଙ୍କ ସହିତ ପରିଚୟ । ସେତ ଅନେକ ବର୍ଷ ତଳର କଥା । ଚନ୍ଦ୍ରରାଓ ମତେ ଜାଣିଥିଲା ଅନେକ ଆଗରୁ । ହେଲେ ଚିହ୍ନି ନ ଥିଲା । ମୁଁ ବି ସେମିତି ଦିନନାଥ ମୁହଁରୁ ତା ନାଁ ଶୁଣିଥିଲି । ହେଲେ ଦେଖି ନଥିଲି । ପ୍ରଥମ କରି ଦେଖିଲି ଦିନନାଥର ଘରେ । ଆସ୍କାରୁ ଆସିଥିବା ରାଓ ସହିତ ପରିଚୟ କରେଇ ଦେଲା ଦିନନାଥ, ଆଉ ସେଇଠୁ ସେ ମୋ ପାଖରେ ହେଇଗଲା 'ଆସ୍କାରାଓ' । ପରିଚୟ ପରେ ଲାଜ ଲାଜ ମୁହଁରେ ଠିଆ ହେଇଥିଲା ରାଓ । ଧୀର ନମ୍ର ସଂକୁଚିତ ରାଓ । ଏ ସହର ସହିତ ମେଳ ଖାଉ ନ ଥିବା ରାଓ । ତା ପରେ ତ ଅନେକ ଥର ମୁହାଁମୁହିଁ ହେଇଛୁ ଆମେ । ଆଜିର ରାଓରେ ପରିଣତ ହେବାର ପ୍ରୟାସକାଳର ଚିତ୍ର ସବୁ ଦେଖିଚି । ତାର ସମସ୍ତ ପରିବର୍ତ୍ତନ ତ ମୋ ଆଖି ଆଗରେ । ଆସ୍କାରୁ ଆସି ଏଠି ଚାକିରିରେ ପଶିଲା ରାଓ । ଦିନେ ସୂଚନା ଭାବନ ସଜାହେବାର ଦାୟ ମୋ ଉପରେ ନ୍ୟସ୍ତ ହେଲା । ସେତେବେଳେ ମୁଁ କହିଲେ ମୋ ପଛରେ ଆହୁରି କିଛି ବଂଧୁ । ଆସ୍କା ରାଓ ବି ସାମିଲ ହେଇ ସାରିଥିଲା ସେଇ ବଂଧୁ ମାନଂକ ଭିତରେ । ଲାଗି ପଡ଼ିଲୁ କାମରେ । ରାଓ ଉପରେ ଦାୟିତ୍ୱ । ତା'ର ନିଜସ୍ୱ ଶୈଳୀରେ ବୋଇତ ବନ୍ଦାଣର ଚିତ୍ରଟିଏ ପ୍ରସ୍ତୁତ କଲା ରାଓ । ତା'ର ସେ କଳାକୃତି ଆମମାନଙ୍କର ସମସ୍ତ କାମକୁ ପଛରେ ପକେଇ ଝଟକୁ ଥିଲା । ଚିତ୍ରଟି ସୂଚନାଭବନରେ ଅଭ୍ୟର୍ଥନା ସ୍ଥାନରେ କୋଡ଼ିଏ ବର୍ଷରୁ ଅଧିକ କାଳ ରହିଥିଲା । ପରବର୍ତ୍ତୀ କାଳରେ ତାକୁ ଖୋଲି ସେ ସ୍ଥାନରେ ଓଡ଼ିଶାର ଏକ ଭୁଲ ମାନଚିତ୍ର ମାରିଛନ୍ତି ସରକାର । ଛବିଟି ଗଲା କୁଆଡ଼େ ? ସରକାରୀ ଅମଲାମାନଂକର ଅତ୍ୟାଚାରରେ ସେ ଏ ଯାଏଁ ବଞ୍ଚିଛି ନା ଧ୍ୱଂସ ପାଇଛି ?

ଯେଉଁ ରାଓକୁ ଦିନେ ଦେଖିଥିଲି ନିଜକୁ ଖାପ ଖୁଆଇ ନ ପାରି ଭୀତ, ଶଂକିତ ଭାବରେ ରାଜଧାନୀର ରାଜପଥରେ ଘୁରି ବୁଲିବାକୁ ତାକୁଇ ଦିନେ ପୁଣି ଦେଖିଲି

ତାର ନିଜସ୍ୱ ଚିତ୍ର ଶୈଳୀ ମାଧ୍ୟମରେ ଖାଲି ରାଜଧାନୀ ନୁହେଁ ସାରା ଓଡ଼ିଶା ଦଖଲ କରି - ପାଦ ବଢ଼େଇଛି ରାଜ୍ୟ ବାହାରକୁ । ଚନ୍ଦ୍ର ରାଓର ଚିତ୍ର ପାଇଁ ଗରାଖର ଅଭାବ ଘଟିନି କେବେ । ତା ଚିତ୍ରର ଚାହିଦା ଓଡ଼ିଶା ଭିତରେ ଯେତିକି ଓଡ଼ିଶା ବାହାର ତାଠୁଁ ଅଧିକ ।

ରାଓ ମତେ ଭଲପାଉଥିଲା । ଶ୍ରଦ୍ଧା କରୁଥିଲା । ବଡ଼ ଭାଇର ସମ୍ମାନ ଦେଉଥିଲା । ତା'ର ଅନେକ ନିଜସ୍ୱ ସଂଳାପର ମୁଁ ଶ୍ରୋତା ଥିଲି । ତା ଦୁଃଖରେ ମ୍ରିୟମାଣ ହେଇଛି ତା ସୁଖରେ ହସିଛି । ହେଲେ ଆଜି ଯେଉଁ ଅନୁଶୋଚନା ପ୍ରତି ମୁହୂର୍ତ୍ତରେ ମତେ ଦଂଶନ କରୁଛି ସେଥିରୁ ବର୍ତ୍ତିବାର ବାଟ କାହିଁ ? ରାଓକୁ ଶେଷ ଦର୍ଶନ ମୁଁ କରିପାରିଲିନି । ସେ ଦୁଃଖକୁ ଭୁଲିବି କେମିତି ?

■

## ପଦ୍ମନାଭ ବେହେରା

## ବ୍ୟକ୍ତିଗତ ଅନୁଭୂତିରୁ ପଦେ

ଦୀର୍ଘ ୪୫ ବର୍ଷ ତଳର କଥା ଆଜି ମନେପଡ଼େ । ଖଲ୍ଲିକୋଟ ଆର୍ଟ ସ୍କୁଲରେ ଚିତ୍ରକଳା ଶିଖିବା ସମୟରେ ସବୁ ସହପାଠୀମାନଙ୍କ ସହ କ୍ରମେ ପରିଚୟ ହୁଏ । ସେହି ଭିତରେ ଚନ୍ଦ୍ରଶେଖର ରାଓଙ୍କ ସହିତ ପରିଚୟ ମଧ୍ୟ ହୋଇଛି । ସେ ଥିଲେ ମୋ ଠାରୁ ବର୍ଷେ ଉପର ଶ୍ରେଣୀରେ, ଚନ୍ଦ୍ରବାବୁଙ୍କ ସହ ସମ୍ପର୍କ ମୋର ସଂପୂର୍ଣ୍ଣ ଅଲଗା ଥିଲା କାରଣ ସେ ଥିଲେ ଭାରତୀୟ କଳାର ଛାତ୍ର ଏବଂ ମୁଁ ମଧ୍ୟ ସେହି ଭାରତୀୟ କଳାର ଛାତ୍ର ଥିଲି । ସେ ୧୯୬୨ ମସିହାରେ ଖଲ୍ଲିକୋଟ ଛାଡ଼ିଥିଲେ ଏବଂ ମୁଁ ୧୯୬୩ ମସିହାରେ ଖଲ୍ଲିକୋଟ ଛାଡ଼ିଥିଲି, ତା ପରେ ସମସ୍ତେ ନିଜ ନିଜର କାର୍ଯ୍ୟପନ୍ଥା ଏବଂ ଜୀବନରେ ମାର୍ଗ ବାଛି ନେଇଥିଲୁ ।

ମୁଁ ନିଃସନ୍ଦେହରେ କହିବି ଚନ୍ଦ୍ରବାବୁ ଜଣେ ସ୍ୱନାମଧନ୍ୟ ଏବଂ ଉଚ୍ଚକୋଟୀର କଳାକାର ତଥା କଳାର ସାଧକ ଥିଲେ । ତାଙ୍କର କଳା ସାଧନା ଏବଂ ଅଧ୍ୟବସାୟ ବଳରେ ସେ ଅନେକ ଅନୁଷ୍ଠାନ, କଳାକେନ୍ଦ୍ର ସହିତ ସମ୍ପୃକ୍ତ ଥିଲେ, ସେ ରାଜ୍ୟ ହସ୍ତଶିଳ୍ପରେ ଡିଜାଇନ୍‌ର ତଥା ବହୁ ଦିନଧରି କର୍ମରତ ରହି ଅନେକ ଉଚ୍ଚ ପଦପଦବୀରେ ପ୍ରତିଷ୍ଠିତ ହୋଇପାରିଥିଲେ । ସେ ରାଜ୍ୟ ଲଳିତ କଳା ଏକାଡେମୀ ଦ୍ୱାରା ବହୁବାର ପୁରସ୍କୃତ ହୋଇଛନ୍ତି, ତା ଛଡ଼ା ସେ ଏକାଡ଼େମୀ ଅଫ୍ ଫାଇନ୍ ଆର୍ଟ, ସର୍ବ ଭାରତୀୟ ହସ୍ତଶିଳ୍ପ ପୁରସ୍କାର ପାଇଥିଲେ । କିନ୍ତୁ ଯେତେ ପୁରସ୍କାର ତାଙ୍କୁ ଦିଆଯାଇଛି ତାଙ୍କ କଳା ସାଧନା ନିକଟରେ ତାହା ଅତି ନଗଣ୍ୟ ।

ଡିସେମ୍ବର ୬ ତାରିଖ ୨୦୦୨ ମସିହା, ଶିଳ୍ପୀ ଅନନ୍ତ ପଣ୍ଡାଙ୍କୁ ଧର୍ମପଦ ପୁରସ୍କାର ଦେବା ଅବସରରେ ରାଜ୍ୟ ଲଳିତ କଳା ଏକାଡ଼େମୀ ତରଫରୁ ୫ଜଣ ବରିଷ୍ଠ ଶିଳ୍ପୀଙ୍କୁ ମଧ୍ୟ ସମ୍ମାନ ଦିଆଯାଇଥିଲା । ସେଦିନ ସନ୍ଧ୍ୟାରେ ଭୁବନେଶ୍ୱର ସୂଚନା ଭବନରେ ଆମେ ଏକତ୍ରିତ ହୋଇଥିଲୁ । ଏହି ୫ଜଣ ସମ୍ମାନିତ ଶିଳ୍ପୀ ଥିଲେ ଚନ୍ଦ୍ରଶେଖର ରାଓ, ଜଗଦୀଶ କାନୁନ୍‌ଗୋ, ସୀତାକାନ୍ତ ମହାପାତ୍ର, ରମେଶ ମହାନ୍ତି ଏବଂ ମୁଁ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏବଂ ସଂସ୍କୃତିମନ୍ତ୍ରୀଙ୍କ ଠାରୁ ସମ୍ମାନ ଗ୍ରହଣ କରି ସାରିବାପରେ ନିଜ ଭିତରେ କିଛି ବଂଧୁତ୍ୱପୂର୍ଣ୍ଣ ଆଳାପ ମଧ୍ୟ କରିଥିଲୁ । ସେ ଦିନର କଥା ମନେପଡ଼ିଲେ ଆଜି ଆଖି ଓଦା ହେଇ ଆସୁଛି, ହଜି ଯାଇଛି ସେ ସ୍ନେହଭରା ଆବେଗ । ଲୁଚି ଯାଇଛି ସେ ଅନ୍ତରଙ୍ଗ ବନ୍ଧୁତ୍ୱ ।

ଦିନେ ସନ୍ଧ୍ୟାବେଳେ କେତେଜଣ ଶିଳ୍ପୀବଂଧୁ ମୋ ଘରେ ହଠାତ୍ ଆସି ପହଞ୍ଚିଥିଲେ, ସେମାନେ ଥିଲେ ମୋର ସହପାଠୀ ଦିନନାଥ, ଚନ୍ଦ୍ର ଶେଖର୍ ଡି. ଏନ୍. ରାଓ ଏବଂ କାଶୀନାଥ । ସେମାନଙ୍କୁ ଦେଖି ମୁଁ ଆଚମ୍ବିତ ହୋଇଥିଲି । ଜାଣିଲି ଦିନନାଥଙ୍କ ପୁଅ ବାହାଘର । ଅନ୍ତରଙ୍ଗ ଆଳାପ ହେଲା । ବୋଧହୁଏ ଚନ୍ଦ୍ରବାବୁଙ୍କ ସହ ମନଖୋଲି ଦିପଦ କଥା ହେବାର ସେହି ଦିନଟି ଶେଷ ଦିନଥିଲା ।

ଫେବୃଆରୀ ୪ ବୁଧବାର ସକାଳେ ହଠାତ୍ ଫୋନ୍ ବାଜିଲା । ଫୋନ୍‌ରେ ଶିବ ପାଣିଗ୍ରାହୀ ଯେଉଁ ସମ୍ବାଦ ଶୁଣାଇଲେ ସେଥିରେ ମୁଁ ସ୍ତମ୍ଭୀଭୂତ ହୋଇଯାଇଥିଲି । ମୋର ଦେହ ଏବଂ ହାତ ଅବଶ ହୋଇ ପଡ଼ିଲା ହାତରୁ ଫୋନ୍‌ଟା ଯେପରି ଖସି ପଡୁଛି । ଶିବ କହିଲେ 'ଚନ୍ଦ୍ରବାବୁ ସବୁଦିନ ପାଇଁ ଆମକୁ ଛାଡ଼ିଚାଲିଗଲେ' ଶୁଣିକି ମଧ୍ୟ ବିଶ୍ୱାସ କରିପାରିଲି ନାହିଁ ।

ଆଜି ତାଙ୍କ ସ୍ମୃତିରେ, ଲୁହଭରା ଆଖିରେ ଏତିକି ଭଗବାନଙ୍କୁ ନିବେଦନ ତାଙ୍କର ଅମର ଆତ୍ମା ପ୍ରଭୁ ପାଦ ତଳେ ଲୀନ ହେଉ । ସେ ଆମ୍ଭମାନଙ୍କ ନିକଟରେ ଚିର ସ୍ମରଣୀୟ ହୋଇ ରହନ୍ତୁ । ତାଙ୍କର ଉତ୍ସାହ, ପ୍ରେରଣା ସମସ୍ତ ଶିଳ୍ପୀବୃନ୍ଦଙ୍କୁ ଉଦ୍‌ବୁଦ୍ଧ କରୁ । ଶେଷରେ ଭଗବାନଙ୍କ ନିକଟରେ ମୋର ଏତିକି ପ୍ରାର୍ଥନା ତାଙ୍କର ଶୋକସନ୍ତପ୍ତ ପରିବାରବର୍ଗଙ୍କୁ ଏହି ଦୁଃଖ ସମୟରେ ଧୈର୍ଯ୍ୟ ଏବଂ ଶକ୍ତିପ୍ରଦାନ କରନ୍ତୁ ।



# ବାଞ୍ଛାନିଧି ପଟ୍ଟନାୟକ

## ଆସ୍କା ରାଓ : ଚନ୍ଦ୍ରଶେଖର ରାଓ

୧୯୬୭ ମସିହା ସରସ୍ୱତୀ ପୂଜା ପରଦିନ ଖଲ୍ଲିକୋଟ କଳା ବିଦ୍ୟାଳୟରେ ନାଟକ ହେଉଥାଏ । ନାଟକରେ ମୋର ଅଭିନୟ ଦେଖି ଯେଉଁ କେତେ ଜଣ ଦର୍ଶକ ବାହାବା ଦେବାକୁ ମୋ ପାଖକୁ ଆସିଥିଲେ, ସେ ଭିତରେ ଚନ୍ଦ୍ରଶେଖର ରାଓ ବି ଥିଲେ । ସେଠାରେ ତାଙ୍କ ସହିତ ପରିଚୟ ହୋଇଥିଲା ।

ଭୁବନେଶ୍ୱରରେ ତାଙ୍କ ସହିତ ମୋର ବଂଧୁତା ବେଶ୍ ଜମିଗଲା । ଚିତ୍ରକଳା ମହାବିଦ୍ୟାଳୟରେ ପାଠୀବାବୁ, ଅସୀମଦା, ଡି.ଏନ୍. ରାଓଙ୍କ ଗହଣରେ ବନ୍ଧୁତା ବଢ଼ିଲା । ଆମ ଭିତରେ ସେ ଆସ୍କାରାଓ ନାମରେ ପରିଚିତ ହୋଇଥିଲେ ।

ଆଜି ଏକଥା ଭାବିଲା ବେଳକୁ ବିଶ୍ୱାସ ହେଉନି ଆସ୍କାରାଓ ଆଉ ନାହାନ୍ତି । ତାଙ୍କ ସହିତ ସାକ୍ଷାତ ହେଲେ ସେ ପଚାରୁଥିଲେ ଏବେ କେଉଁ କେଉଁ ସିନେମା ସୁଟିଂ ଚାଲିଛି ? ଆପଣ କେଉଁ ସିନେମାରେ ଅଛନ୍ତି ? କ'ଣ ସବୁ ଡ୍ରାମା ଚାଲିଛି ? ସେଥିରେ ଆତ୍ମୀୟତା, ସ୍ନେହ ପୂରି ରହୁଥିଲା । ଏସବୁ କିଏ ଆଉ ପଚାରିବ ? ସବୁ ମାୟା ପରି ଲାଗୁଛି ।

ସେ ଲୋକକଳାର ପରମ୍ପରାକୁ ବିଶ୍ୱଦରବାରରେ ପହଞ୍ଚାଇଥିଲେ । ସାମ୍ପ୍ରତିକ ଚିତ୍ରକଳାରେ ପଟ୍ଟଚିତ୍ରକୁ ଭାଙ୍ଗି ନୂଆରୂପ ଦେଇଥିଲେ । ତାଙ୍କର ଚିତ୍ରରେ ଏକ ନୂତନ ସ୍ଫୁଲିଙ୍ଗ ଥିଲା । ଏହି କଳା ଧାରାରେ ବର୍ତ୍ତମାନ ଅନେକ ଚିତ୍ରଶିଳ୍ପୀ ଆକୃଷ୍ଟ ହୋଇଛନ୍ତି । ମୋର ପୁଅ ସଂଜୟ ମଧ୍ୟ ତାଙ୍କୁ ଅନୁସରଣ କରି କୃତକାର୍ଯ୍ୟ ହୋଇ ପାରିଛି । ଏହି ଧାରାରେ ଅନେକ କାଳାକାରଙ୍କୁ ସୃଷ୍ଟି କରି, ଆଗେଇ ନେବାର ପ୍ରୟାସ ଉତ୍ତର ପୁରୁଷଙ୍କୁ ହସ୍ତାନ୍ତର କରି ଅକାଳରେ ସେ ଚାଲିଗଲେ । ତାଙ୍କ ବିଷୟରେ ଲେଖିବା ଅପେକ୍ଷା ସ୍ମରଣ କରିବାକୁ ଅଧିକ ଉଚିତ ମନେକରୁଛି ।

କେହି ରହି ନାହିଁ, ରହିବେ ନାହିଁ, ଅଭିନୟ ସାରି ବାହୁଡ଼ି ଯିବେ । ଏସବୁ ନାଟକ ପରା । ହେଲେ ନାଟକରେ ଅସ୍ୱାଭାବିକ ଯବନିକା ପତନ ହେଲେ ମନରେ କଷ୍ଟ ହୁଏ । ଆହୁରି କିଛି ବାକି ରହିଗଲା ପରି ଲାଗେ । ତାଙ୍କର ଅଭିନୟ ବାକି ରହିଗଲା । ରାଧାକୃଷ୍ଣଙ୍କ ପୂଜା ଅଧା ରଖି ଆଖିବୁଜି ପ୍ରାର୍ଥନାରେ ସତେ ଲୀନ ହୋଇ ଗଲେ କି ?



# ପ୍ରମୋଦ କୁମାର ମହାନ୍ତି
# କିଛି ସ୍ମୃତି ଅନେକ ଅନୁଭୂତି

ଦେହ ଥିବା ଯାଏ ଅହଙ୍କାର ଯାଏ ନାହିଁ, ଆଉ ଭାବ ଥିବା ଯାଏ ଅହଂ ମଧ୍ୟ ଯାଏ ନାହିଁ । ତେବେ ନିଜର ଅହଂ ଆଦର୍ଶର ଉପର ଦେଇ, ପ୍ୟାସିଭ୍ ହୋଇ ଯେ ଯେତେ ରହିପାରେ ସେ ସେତେ ନିରହଙ୍କାର ଏବଂ ସେ ସେତେ ଉଦାର ।

ଚନ୍ଦ୍ରଶେଖର ଥିଲେ ଆମର ବଡ଼ଭାଇ ପରି । ଆଜି ସେଇ ହସହସ ଉଦାର ଆଦର୍ଶ ଶିଳ୍ପୀ ଆଉ ନାହାନ୍ତି । ଆମ ଚିତ୍ରଶିଳ୍ପୀ ପରିବାରର ଚନ୍ଦ୍ରହୀନ ହୋଇଗଲା । ଯେ ନିଜକୁ ଯେତେ ପ୍ରଚାର କରେ, ସେ ଆତ୍ମପ୍ରବଞ୍ଚନା କରେ । ଆଉ ଯେ ସତ୍ୟ ବା ଆଦର୍ଶରେ ମୁଗ୍ଧ ହୋଇ ତା ବିଷୟରେ କୁହେ ସେ କିନ୍ତୁ ନିଜକୁ ସଠିକ୍ ମୂଲ୍ୟାୟନ କରିପାରେ । ଜଣେ ପ୍ରତିଷ୍ଠିତ ଶିଳ୍ପୀ ହୋଇ ମଧ୍ୟ କେବେ ତାଙ୍କ ଠାରୁ ସ୍ୱଗୁଣଗାନ କରିବା ଶୁଣିନାହିଁ । ସତେ ସେ ଥିଲେ ଜଣେ ଆଦର୍ଶ ବ୍ୟକ୍ତିତ୍ୱର ପ୍ରତୀକ, ଶିଳ୍ପୀ ଟିଏ ।

ତୁମ ଭିତରେ ଯଦି ସତ୍ୟ ନଥାଏ, ତେବେ ହଜାର କୁହ, ହଜାର ବାହାନା କର, ହଜାର ଛଳନା କର, ହଜାର କାଇଦା ବି ଦେଖାଅ, ତୁମ ଚରିତ୍ରରେ, ତୁମ ମନରେ, ତୁମ ବାକ୍ୟରେ, ତୁମ ତୂଳୀରେ ତାହାର ଜ୍ୟୋତି କେବେ ଫୁଟିବ ନାହିଁ, ସୂର୍ଯ୍ୟ ଯଦି ନ ଥାଏ, ତେବେ ବହୁ ଆଲୋକ ମଧ ଅନ୍ଧକାରକୁ ଏକଦମ୍ ତଡ଼ିଦେଇ ପାରିବ ନାହିଁ । ଠିକ୍ ସେଇ ପରି ଚନ୍ଦ୍ରଶେଖର ଭାଇ ଥିଲେ ଏ ଶିଳ୍ପୀ ଜଗତରେ ସକାଳର ସୂର୍ଯ୍ୟଟିଏ ।

ଯଦି ତୁମେ ଜଣେ ଭଲ ବ୍ୟକ୍ତି ବା ଶିଳ୍ପୀ ହେବାକୁ ଚାହଁ ତେବେ ନେତୃତ୍ୱର ଅହଂକାର ତ୍ୟାଗ କର, ନିଜର ଗୁଣଗାନ ଛାଡ଼ିଦିଅ । ସମସ୍ତଙ୍କୁ ପ୍ରେମର ସହିତ କୁହ ଦେଖିବ ହଜାର ହଜାର ତରୁଣ ଶିଳ୍ପୀ ତୁମକୁ ଅନୁସରଣ କରିବେ । ଚନ୍ଦ୍ରଶେଖର ଭାଇଙ୍କ ହାତ ସ୍ପର୍ଶର ଉତ୍ସର୍ଗିତ କଳାଗୁଡ଼ିକୁ ନେଇ ଅନେକ ଶିଳ୍ପୀ ଓ ଛାତ୍ର ଅନୁକରଣ କରି ବିଭିନ୍ନ ପ୍ରଦର୍ଶନୀରେ ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି ।

ଅନୁଭୂତି ଦ୍ୱାରା ଯାହା ଜଣାଯାଏ ତାହାହିଁ ଜ୍ଞାନ । ଚନ୍ଦ୍ରଶେଖର ଭାଇ ନିଜର ଅନୁଭୂତି ଓ ଅନୁଭବକୁ ନେଇ ସେ ସର୍ବଦା ଗବେଷଣା କରି ତୂଳୀ ଚାଳନା କରୁଥିଲେ । ଜଣେ ଶିଳ୍ପୀ ତା ଜୀବନ କାଳରେ ଦୁନିଆକୁ ରଙ୍ଗ ଓ ତୂଳୀରେ ସବୁକିଛି ଆନନ୍ଦ ଦେଇ ସେ ପାଏ ବା କଣ ? ଶୁଣେ ଛବିଟି ଭଲହୋଇଛି, ଏତିକି ମାତ୍ର । ତଥାପି ସେ ବନ୍ଦ କରେନା ତାର ତୂଳୀ ବା ନିହାଣ । ଆଙ୍କିଯାଏ ଅନେକ ଓ ଅନେକ ।



## ଦୁର୍ଗାଚରଣ ପଣ୍ଡା

## ଚିତ୍ରର ମଣିଷ : ଚନ୍ଦ୍ରରାଓ

'ଓ୍ୱା' ଓ୍ୱାକିଙ୍ଗ୍ ଆର୍ଟିଷ୍ଟସ୍ ଏସୋସିଏସନ୍‌ର ଏକ ଚିତ୍ର ପ୍ରଦର୍ଶନୀ ଆୟୋଜନ ଅବସରରେ ଶିଳ୍ପୀ ଚନ୍ଦ୍ରଶେଖର ରାଓଙ୍କ ସହିତ ମୋର ଦେଖା । ଅନ୍ୟ ବନ୍ଧୁଙ୍କ ସହିତ ଆମେ ଥିଲୁ ଓ୍ୱାର ପ୍ରତିଷ୍ଠାତା ସଭ୍ୟ । ଶିଳ୍ପୀ ଅନନ୍ତ ପଣ୍ଡା ଦୁହିଁଙ୍କୁ ପାଖକୁ ଡାକି କହିଲେ ଦୁଇଜଣ - ଗଞ୍ଜାମର, ନିଜେ ନିଜେ ପରିଚିତ ହୁଅ । ତାଙ୍କ ହସ ହସ ଅମାୟିକ କଥାବାର୍ତ୍ତାରେ ମୁଁ ତାଙ୍କର ହୋଇପଡ଼ିଥିଲି । ପ୍ୟାକେଟ୍ ଫିଟାଇ ଆସିକାରୁ ଆଣିଥିବା ତାଙ୍କର କେତୋଟି ଚିତ୍ର ଦେଖାଇଲେ । ରୈଖିକ ଶୈଳୀ ଉପରେ ଆଧାରିତ ଟେମ୍ପେରା ଚିତ୍ରଗୁଡ଼ିକ ଦେଖି ମୁଁ ଖୁସି ହେଲି । ଶେଷଯାଏଁ ସେ ଓ୍ୱା' ସହିତ ସଂପୃକ୍ତ ଥିଲେ, କିନ୍ତୁ ମୁଁ ପାରିଲି ନାହିଁ । ବିଭିନ୍ନ ପ୍ରଦର୍ଶନୀରେ ଭାଗନେବା ନିମନ୍ତେ ସେ ଆସିକାରୁ ଭୁବନେଶ୍ୱର ଆସନ୍ତି । ଆମ ଭିତରେ ଆନ୍ତରିକ ଆଳାପ ହୁଏ । ତାଙ୍କ ଅଙ୍କିତ ଚିତ୍ରଗୁଡ଼ିକ ମୁଁ ମନଯୋଗର ସହିତ ଦେଖେ । ସେ ଯେତେବେଳେ ସେ ପାରମ୍ପରିକ ଶୈଳୀକୁ ନିଜ ଚିତ୍ରରେ ସ୍ଥାନ ଦେଉଥିଲେ ମୁଁ ସେତେବେଳେ ଲୋକକଳାଶୈଳୀକୁ ନେଇ ପରୀକ୍ଷାନିରୀକ୍ଷା କରୁଥିଲି ।

ଚନ୍ଦ୍ରବାବୁ ଆସିକା ଛାଡ଼ି ଭୁବନେଶ୍ୱରରେ ଅବସ୍ଥାପିତ ହେଲେ । ଘଟଣାକ୍ରମେ ଆମେ ଦୁହେଁ ହେଲୁ ବଡ଼ଗଡ଼ ବ୍ରିଟ୍ କଲୋନିର ବାସିନ୍ଦା । ଅନେକ ସମୟରେ ଦେଖାହୁଏ । ସେ ରାସ୍ତାକଡ଼ରେ ସ୍କୁଟର ଅଟକାଇ ଦିଅନ୍ତି । ମୁଖ୍ୟତଃ ଆଲୋଚନା ହୁଏ ଚିତ୍ର ଓ ଚିତ୍ର କାର୍ଯ୍ୟକ୍ରମ ଉପରେ । ଅବଶ୍ୟ ମଝିରେ ମଝିରେ କିଛିଟା କଥା ଓ ବ୍ୟଥା ମଧ୍ୟ ଥାଏ । ଦିନେ ମୁଁ ତାଙ୍କ ଘରକୁ ଯାଇଛି । ମୋ ଆଗରେ ଧାଡ଼ିଏ ଚିତ୍ର ଆଣି ଦେଖେଇଲେ । କହିଲେ ଏଗୁଡ଼ିକ ୟା'ଭିତରେ କରିଛି । ଦେଖିଲ .. କଣ କେମିତି ଲାଗୁଛି । ନିଜସ୍ୱ ଶୈଳୀର ତାଙ୍କ ଚିତ୍ରରେ ଥିଲା କଳା ଓ ଗାଢ଼ା ଖଇରିଆ ଗାର ଏବଂ ତିକାସିନ ତାହାର ବର୍ଣ୍ଣମାଳା । ମୁଁ ମଜାକରି କହିଲି ଚନ୍ଦ୍ରବାବୁ, ବହୁତ ଚାହା ଖୁଆଇଲଣି ୟା ସହିତ କିଛିଟା ମିଠା ଖଟା ହେଉ । ସେ ଉତ୍‌ଫୁଲ୍ଲ ହୋଇ କହିଲେ । ହଁ, ମୁଁ ସେହିକଥା ଭାବୁଛି । ୟା ସହିତ କଣ ମଲ୍‌ଟି କଲର ଯିବ ? ମୁଁ କହିଲି ପଚାରୁଛନ୍ତି କ'ଣ, ପ୍ରୟୋଗ କରି ଦେଖନ୍ତୁ । ପରବର୍ତ୍ତୀ ପର୍ଯ୍ୟାୟରେ ସେ ଉଜ୍ଜ୍ୱଳ ମିଠା, ଖଟା ରଙ୍ଗଦେଇ ଅନେକ ଚିତ୍ର ଆଙ୍କିଥିଲେ । ଏପରିକି ଗୀତଗୋବିନ୍ଦର କେତେକ ଚିତ୍ରରେ ସେ ନୀଳ ଓ ସବୁଜ ରଙ୍ଗକୁ ସୁନ୍ଦର ଭାବେ ବ୍ୟବହାର କରିପାରିଥିଲେ ।

ଝଙ୍କାରରେ ପ୍ରକାଶପାଇଥାଏ ତାଙ୍କର ପ୍ରଚ୍ଛଦ ଓ ମୋର ପ୍ରବନ୍ଧ । ହଠାତ୍ ଦେଖାହେଲା, ଜଣେ ଜଣଙ୍କୁ ପ୍ରଶଂସା କଲୁ । ସେ ପଚାରିଲେ ପାଖରେ ତମ ବହିସବୁ କେଉଁଠି ଡି.ଟି.ପି. କରୁଛ, ମୋର ଗୋଟେ କାମ ଅଛି । ଉତ୍ସୁକତାରେ ପଚାରିଲି କ'ଣ ଲେଖା ଲେଖି କରୁଛକି ? ସେ ହସିଦେଇ କହିଲେ, ଛାନିଆ ହୁଅନି, ମୁଁ ତମ ବିଷୟରେ ହାତ ମାରୁନି । ଏକ ଅଲୋଡ଼ା ବିଷୟ.. ମୋ ଜୀବନୀ ଲେଖୁଛି ।... ଅନୁଭୂତିର ଅନେକ ବିଷୟ ଅପହରଣ ହୋଇଯାଇଛି । ଯାହା ମନକୁ ଛୁଉଁଛି, ଗୋଟିଆ ଗୋଟେଇ କରି ଏକାଠି କରୁଛି । କ'ଣ ଲେଖିବି, କ'ଣ ନଲେଖିବି ଠିକ୍ କରିପାରୁ ନାହିଁ । ମୁଁ କହିଲି ଯାହା ଲେଖିବେ ଲେଖନ୍ତୁ । ଜଣେ ଶିଳ୍ପୀର କୃତି ହିଁ ତାର ପରିଚୟ । ତମ ଚିତ୍ର ତା'ର ଶୈଳୀ ଓ ବିଷୟବସ୍ତୁ ଉପରେ କିଛିଟା କୁହ । ପରେ ସେଗୁଡ଼ିକ ହିଁ ଜଣେ କଳାପ୍ରେମୀ, କଳା ସମାଲୋଚକ ତଥା ଛାତ୍ରଛାତ୍ରୀଙ୍କ ପାଇଁ ଅମୂଲ୍ୟ ତଥ୍ୟ ହେବ । ସେ ଟିକିଏ ଗମ୍ଭୀର ହୋଇପଡି କିଛି ସମୟ ରହି କହିଲେ .. ମୋ ଚିତ୍ର ବିଷୟରେ ମୁଁ କ'ଣ କହିବି ? ... ଆପଣମାନେ ଦେଖିବେ, ଆପଣମାନେ ଲେଖିବେ... । ଓଡ଼ିଶାର ପାରମ୍ପରିକ ଚିତ୍ରଶୈଳୀ ପ୍ରଭାବରେ ନିଜସ୍ୱ ଶୈଳୀ ସୃଷ୍ଟି କରିଥିବା ଶିଳ୍ପୀଙ୍କ ମଧ୍ୟରେ ଚନ୍ଦ୍ରଶେଖର ରାଓ ଅଗ୍ରଗଣ୍ୟ । ମୁଁ ଦେଖୁଥିଲି ତାଙ୍କ ମନ, ବାକ୍ୟ ଓ କୃତିରେ ଚିତ୍ର ହିଁ ଚିତ୍ର । ସେ ମୋ ପାଇଁ ଥିଲେ ଚିତ୍ରର ମଣିଷ ।



## ଫକୀରମୋହନ ମଲ୍ଲିକ
## ସେ ଆମ ଭିତରେ ନାହାଁନ୍ତି

ଖଲ୍ଲିକୋଟ ସରକାରୀ ଚାରୁ ଓ କାରୁକଳା ବିଦ୍ୟାଳୟର ପ୍ରଥମବର୍ଷ ଛାତ୍ର ଭାବେ ଛାତ୍ରାବାସର ଇନ୍‌ଚାର୍ଜଙ୍କ ଅନୁମତି ନେଇ ଅଫିସ ପାହଚରୁ ତଳକୁ ଆସିଲା ବେଳେ ଦେଖିଲି ଭୀମସେନ ମହାରଣାଙ୍କୁ । ମହାରଣା ବାବୁ ମିତ ମିତ ପାଟି କରି ଡାକିଲେ । ଦୂରରେ ଥିବା ଜଣେ ଟ୍ରାଉଜର ପଞ୍ଜାବି ପିନ୍ଧିଥିବା ପିଲା ସହାସ୍ୟ ବଦନରେ ପାଖକୁ ଆସିଲେ । ଭୀମବାବୁ କହିଲେ, 'ଏ ଆମ ଗାଁ ପିଲା, ସାନ ଭାଇ ହେବ' । ସେ ମୋତେ କହିଲେ ଶିଘ୍ର ଆସ, ରାଜ ପ୍ରାସାଦର ପ୍ରକାଣ୍ଡ ଅଗଣା ପାରି ହୋଇ, ଶେଷ ଅଗଣା ପାର ହୋଇଗଲୁ । ଗୋଟିଏ କୋଠରୀ ଭିତରକୁ ୩ଜଣ ଗଲୁ । ସେ ଘର ଭିତରେ ୪ଟି ଖଟ ପଡ଼ିଥାଏ । ଦେବରାଜ ବାବୁ, ରାଓ ବାବୁ, ଭୀମବାବୁ ଆଉ ମୁଁ ସେ ଘରେ ରହିଲୁ। ଏ ତିନି ଜଣ ଗୋଟିଏ ଶ୍ରେଣୀର ପରସ୍ପର ମିତ ବୋଲି ସମ୍ବୋଧନ କରନ୍ତି । ତିନି ଜଣଙ୍କ ମଧ୍ୟରେ ନିବିଡ ସ୍ନେହ । ମୁଁ ମଧ୍ୟ ତାଙ୍କ ସ୍ନେହପୂର୍ଣ୍ଣ ବ୍ୟବହାର ବାଂଧି ହେଲି ।

ସେଦିନ ୪ଟା ପରେ ଚନ୍ଦ୍ରବାବୁ ଚିତ୍ର ଉପକରଣ ଖଲ୍ଲିକୋଟ ରାଓ ବାବୁଙ୍କ ଦୋକାନରୁ କିଣାଇ ଦେଲେ । ସ୍କେଚ୍ କରିବା ଶୈଳୀ ମୁଁ ଜାଣିନଥାଏ । ଚନ୍ଦ୍ରବାବୁ ଆଗ୍ରହର ସହ ସ୍କେଚ୍‌ର ପଦ୍ଧତି ଶିଖାଇଲେ । ତିନି ମିତ ବୃଥାରେ ସମୟ ବିତାଇବା ମୁଁ କେବେ ଦେଖିନାହିଁ । ପ୍ରତିଦିନ ଛବି କରନ୍ତି । ତାଙ୍କ ଛବି ବହୁତ ଭଲ ଲାଗେ । ତିନିମିତ ଯାହା ଚିତ୍ର କରନ୍ତି ଶୋଇବା ଖଟ ତଳେ ଲୁଚାଇ ରଖନ୍ତି । କାରଣ ପିଲାଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଚାଲେ କିଏ କେତେ ଭଲ ଛବି କଲା ।

ବାହାରକୁ ସ୍କେଚ୍ କରିବାକୁ ଯିବା ପାଇଁ ତାଙ୍କର ଗୋଟିଏ ଦଳ ଥାଏ । ଦିନନାଥ ପାଠୀ, ମୁଁ ଆଉ ମୋ ଶ୍ରେଣୀର ପିଲାଏ ତାଙ୍କ ଦଳରେ ସାମିଲ ହେଲୁ । ସମସ୍ତଙ୍କର ସ୍କେଚ୍ ଭଲ ହେଉ ଥିଲା କେବଳ ମୋ ସ୍କେଚ୍ ମୋତେ ଭଲ ଲାଗେ ନାହିଁ । ମୋ ଅପେକ୍ଷା ପାଠୀବାବୁଙ୍କ ସ୍କେଚ୍ ବଡ଼ ଆକର୍ଷଣୀୟ ହୁଏ । ମୁଁ ରାଓବାବୁଙ୍କ ପାଖରେ ବସେ । ସେ କିପରି ପେନ୍‌ସିଲ୍ ଧରି କାମ କରୁଛନ୍ତି ଦେଖେ । ମୋ ଖାତାରେ ସେ ସ୍କେଚ୍ କରି ବତାଇ ଦିଅନ୍ତି । ମୋ ଛଡ଼ା ତାଙ୍କ  ପାଖକୁ ଯିଏ ଯାଏ ତାଙ୍କୁ ମଧ୍ୟ ସେ ଶିଖାଇ ଦିଅନ୍ତି । ପ୍ରତିଟି ସମୟକୁ ବିନିଯୋଗ କରିବା ତାଙ୍କର ସବୁଠାରୁ ଭଲଗୁଣ । ଏହି ଅଭ୍ୟାସ ମୋତେ ବିଶେଷ ଭାବେ ପ୍ରଭାବିତ କରିଥିଲା ।

ସେ ଥିଲେ କର୍ମଠ, ମିଷ୍ଟଭାଷୀ, ଧୀର, ସରଳ, ନିଷ୍କପଟ, ଅମାୟିକ, ନିରାଡ଼ମ୍ବର ଓ ସହିଷ୍ଣୁ । ଏଥିପାଇଁ ସେ ସମସ୍ତଙ୍କର ପ୍ରିୟ ଥିଲେ ।  ଖଲ୍ଲିକୋଟରେ ଚାରିବର୍ଷ ବିତାଇବାରେ କାହା ସହିତ ବୈରୀଭାବ ଆଣିବାର କେହି କେବେ କହିପାରିବ ନାହିଁ । ସ୍କୁଲର ସାଂସ୍କୃତିକ କାର୍ଯ୍ୟମାନଙ୍କରେ ସେ ନିଶ୍ଚୟ ଥିବେ ।

ଅଧ୍ୟକ୍ଷ ଦେଓ ସାହେବଙ୍କ ପ୍ରେରଣାରେ ଦିବ୍ୟଜୀବନ ସଂଘ ଉପର ମହଲାରେ ପ୍ରତିଷ୍ଠା କରାଗଲା । ପାଠୀବାବୁ  ଓ ଯୁଧିଷ୍ଠିରବାବୁ ଦୈନିକ ସତ୍‌ସଙ୍ଗ ପରିଚାଳନା ଦାୟିତ୍ୱରେ ରହିଲେ । ରାଓବାବୁ ଓ ମୁଁ ସତ୍‌ସଙ୍ଗରେ ଯୋଗ ଦେଉଥିଲୁ । ଆମ ଭିତରର  ବନ୍ଧୁତା ନିବିଡ଼ ହେଲା ।

ସେ ଚିତ୍ରକଳା ସହିତ ଅଭିନୟରେ ମଧ୍ୟ ଦକ୍ଷ ଥିଲେ । ଥରେ କଲେଜରେ ନାଟକ ହେଉଥାଏ । ସେ ନାଟକରେ ରାଓ ବାବୁ ଓ ଦେବରାଜ ବାବୁ ନାରୀ ଭୂମିକାରେ ଅଂଶ ଗ୍ରହଣ କରିଥାନ୍ତି । ସେ ରୂପସଜ୍ଜା ନିଜେ ନିଜେ ହୋଇଥାନ୍ତି । ଏବେବି ସେ ରୂପ ଦେଖାଯାଉଛି । ଅଭିନୟରେ ସ୍ତମ୍ଭୀଭୂତ ହେଲେ ଦର୍ଶକ । ଝିଅ ପୁଅର ସନ୍ଦେହ ଘେରରେ ପଡ଼ି ବୁଦ୍ଧିଜୀବୀ ଦର୍ଶକମାନେ ଗ୍ରୀନ୍ ରୁମକୁ ଆସିଥିଲେ ତାଙ୍କୁ ଦେଖିବା ପାଇଁ ।

ଯେଉଁଠି ଥିଲେବି ଆମର ସମ୍ପର୍କ ରହିଥାଏ । ଭୁବନେଶ୍ୱରରେ ରହିବା ଭିତରେ ଚିତ୍ରକଳାର ଅଭ୍ୟାସ ବଢ଼ାଇବା ସଙ୍ଗେ ସଙ୍ଗେ ସାନ୍ଧ୍ୟ କଲେଜକୁ ଯାଇ ଶିକ୍ଷାର ଆଉ କେତେ ପାହଚ ଚଢ଼ିଲେ । ଅଧିକାଂଶ ସମୟ ଭୁବନେଶ୍ୱରରେ ଭେଟ ହୁଏ । ହସ ହସ ମୁହଁରେ ସବୁକଥା ପଚାରନ୍ତି । ବିଶେଷ କରି ମିତ ଭୀମବାବୁଙ୍କ କଥା ଭୁଲି ନ ଥାଆନ୍ତି । ନିଜ ପ୍ରଦର୍ଶନୀ ପୁସ୍ତିକା ଲମ୍ବା ଝୁଲା ମୁଣିରୁ ବାହାର କରି ଦିଅନ୍ତି । ପ୍ରେରଣା ଦେଇ କହନ୍ତି ଚିତ୍ର କିଛି କିଛି କରୁଥାଅ । କଳାର ବିକାଶ ନିମନ୍ତେ ପିଲାଙ୍କୁ ଶିକ୍ଷାଦେବା ପାଇଁ ସେ ଅନୁଷ୍ଠାନଟିଏ କରିଥିଲେ ନିଜ ବାସଗୃହରେ । ସାକ୍ଷାତ ହେଲେ ପଚାରନ୍ତି ତମ ସ୍କୁଲ କିପରି ଚାଲିଛି ? ପିଲା କେତେ ? ସେ କହନ୍ତି ମୋତେ ସମୟ ହେଉନାହିଁ ପିଲାଙ୍କୁ ବେଶି ସମୟ ଦେବା ପାଇଁ । ମୁଁ ଛବି କରୁଛି । ବାହାରେ ଛବି ପ୍ରଦର୍ଶନୀ କରୁଛି ।

ଓଡ଼ିଶା ଲଳିତକଳା ଏକାଡ଼େମୀ ଆନୁକୂଲ୍ୟରେ ଶିଳ୍ପୀ ଗୋପାଳ କାନୁନ୍‌ଗୋଙ୍କ ଜନ୍ମ ଶତବାର୍ଷିକ ଉତ୍ସବରେ ତାଙ୍କ ଅନୁପସ୍ଥିତି ମୋତେ ଅଡୁଆ ବୋଧ ହେବାରୁ ବନ୍ଧୁମାନଙ୍କୁ ପଚାରି ଜାଣିଲି ସେ ଅସୁସ୍ଥ ଏବଂ ଚିକିତ୍ସାଧୀନ । ସାକ୍ଷାତ କରିବାର ଆଶା ରଖି କଟକ ଫେରିଲି । ମନ ଭାରି ବ୍ୟସ୍ତ ଥାଏ ।

ହଠାତ୍ ବୁଧବାର ସକାଳେ ଶିବବାବୁ ଫୋନ୍ କଲେ । ଅତି ଛାନିଆ ଥିଲା ତାଙ୍କ ସ୍ୱର । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । କହିଲେ, ବଡ଼ ଦୁଃଖର ଖବର, ରାଓ ବାବୁ କାଲିରାତିରେ ଚାଲିଗଲେ । ମୁଁ ଆଉ ହରିବାବୁ ଗାଡ଼ିରେ ବାହାରିଲୁ ଆପଣ ବାହାରନ୍ତୁ ଭୁବନେଶ୍ୱର ଯିବା । ସେତେବେଳେ ମୁଁ ପ୍ରସ୍ତୁତ ହୋଇ ଯାଇଥାଏ ପୁରୀଯିବା ପାଇଁ । କେବଳ ଅପେକ୍ଷା ଥାଏ ଗାଡ଼ିକୁ । ରାଓବାବୁ ପୁରୀ ସ୍ୱର୍ଗଦ୍ୱାର ଯିବେ । ମୁଁ ତାଙ୍କୁ ସେଠାରେ ଶେଷ ଦେଖା କରିବି ବୋଲି କହିଲି ।

ଏତେକ କହିବା ପରେ ମନ ଦୁଃଖରେ ଘାଣ୍ଟିହେଲା । ଅନେକ ଚିନ୍ତା ଭିତରେ ଗାଡ଼ିରେ ବସି ପୁରୀରେ ପହଞ୍ଚିଲି, ବାଟ ଜାଣିପାରିଲି ନାହିଁ । ସ୍ୱର୍ଗଦ୍ୱାରରେ ପହଞ୍ଚି ଦେଖିଲି ରାଓ ବାବୁ ଛ'ଖଣ୍ଡ କାଠଉପରେ ଆଉ ନାହାଁନ୍ତି । ସମସ୍ତଙ୍କ ମୁହଁ ଦୁଖରେ ମଳିନ, ନତମସ୍ତକ । ସେଠାକାର ପରିବେଶ ଦେଖିଲେ ଯେକେହି ଲୋକର ଭାବାନ୍ତର ହେବ ନିଶ୍ଚୟ, ମୋର ତାହାହିଁ ହେଲା । ଅଗ୍ନିର ଲେଲିହାନ ଶିଖା । ସେଥିରେ ପୁଣି ଧୂଆଁ । ଆକାଶକୁ ଚାହିଁଲି । ଆଖିରେ ଲୁହ ଭରି ହୋଇଥାଏ । ରାଓ ବାବୁଙ୍କୁ ଶୁଖିଲା କାଠ ଉପରେ ଶୁଆଇ ଦେଇଥାନ୍ତି ବେଳେ ବେଳେ ସେ ଦିଶୁନଥାନ୍ତି । ଶେଷ ପ୍ରଣାମ ଅଗ୍ନିରେ ଦେଲି ।



## ହରେକୃଷ୍ଣ ରାଉତ

## ଚନ୍ଦ୍ରରୁ ଚେନାଏ

ପୂର୍ଣ୍ଣିମା ବାକିଥାଏ ଚାରିଦିନ । ହଠାତ୍ ଗ୍ରହଣ ଲାଗିଗଲା । ଏମିତି ନିର୍ମମ ଗ୍ରହଣ ଯେ ଚନ୍ଦ୍ର ଆଉ ସେଠାରୁ ମୁକୁଳି ପାରିଲେ ନାହିଁ । ସବୁଦିନ ପାଇଁ ଲିଭିଗଲେ । ଏ ଦୁର୍ଯୋଗ ଆସିନଥିଲେ ଚନ୍ଦ୍ର ହୁଏତ ଆଉ କିଛି ଦିନ ତାଙ୍କ ପରିପୂର୍ଣ୍ଣ ଆଭାରେ ଦୁନିଆକୁ ବିମୋହିତ କରିଦେଇଥାନ୍ତେ । ତଥାପି ଯେତିକି ଆଲୋକ ସେ ବିତରଣ କରିଯାଇଛନ୍ତି, ତାହା ଜନମାନସକୁ ଉଲ୍ଲସିତ କରିଦେଇଛି ।

ଶିଳ୍ପୀ ଚନ୍ଦ୍ରଶେଖର ରାଓ ମୋର ସହପାଠୀ, ସହକର୍ମୀ ବା ସହୋଦର ନଥିଲେ । ତଥାପି ତାଙ୍କ ସହିତ ଏକ ଆତ୍ମିକ ସଂପର୍କ ଗଢ଼ି ଉଠିଥିଲା ଓଡ଼ିଶା ଲଳିତ କଳା ଏକାଡେମୀରେ ମୋର ୨୫ବର୍ଷର କାର୍ଯ୍ୟକାଳ ଭିତରେ । ଅସୁସ୍ଥତା ଭିତରେ ତାଙ୍କୁ ସାକ୍ଷାତ କରିବାକୁ କେତେଥର ଖବର ପଠାଇଲେ । ମୁଁ କି ଯାଏ ଏବଂ ତାଙ୍କୁ ଅସହାୟ ଅବସ୍ଥାରେ ଶଯ୍ୟାଶାୟୀ ହେବା ଦେଖି ନିରାଶ ମନରେ ଫେରେ ? ମୋ ପ୍ରତି ତାଙ୍କ ଶ୍ରଦ୍ଧା ଓ ସମ୍ମାନର କଥା ଭାବିଲେ ଆଜି ନିଜକୁ ମୁଁ ଧନ୍ୟ ମନେକରେ । ତାଙ୍କ ମର ଶରୀରରେ ଫୁଲମାଳ ଦେଉ ଦେଉ ନିଜ କୋହ ସମ୍ଭରଣ କରିପାରି ନଥିଲି । ଘଟଣାକ୍ରମେ ଏହି ସ୍ମରଣିକା ପାଇଁ ଆସିଥିବା କେତେକ ଲେଖା ପଢୁପଢୁ ଅଜାଣତରେ ଆଖିପତା ଭିଜିଯାଇଚି ।

'ଶିଳ୍ପୀ' ଚନ୍ଦ୍ରଶେଖର ଓ 'ମଣିଷ' ଚନ୍ଦ୍ରଶେଖର ଥିଲେ ଏକ ଓ ଅଭିନ୍ନ । ତାଙ୍କ କଳାକୃତିରେ ଯେପରି ମାଦକତା ଭରି ରହିଥିଲା, ବ୍ୟକ୍ତିତ୍ୱରେ ଥିଲା ତତୋଧିକ ସମ୍ମୋହନୀ ଶକ୍ତି । ସେଥିପାଇଁ ସେ ସମାଜରେ ଶ୍ରଦ୍ଧା ଓ ସମ୍ମାନ ପାଉଥିଲେ । ତାଙ୍କର କଳାରସିକ, ପ୍ରଶଂସକ, ସମାଲୋଚକ ଥିଲେ, ହେଲେ ମୋ ଜାଣିବାରେ ନିନ୍ଦୁକ ନଥିଲେ । ଯେଉଁମାନେ ନିନ୍ଦା କରିବାକୁ ଚେଷ୍ଟା କରିଛନ୍ତି, ବାସ୍ତବରେ ସେମାନେ ନିନ୍ଦୁକ ନୁହନ୍ତି, ଈର୍ଷାକାତର । ନିନ୍ଦୁକ ହେବା ପାଇଁ ବି ଯୋଗ୍ୟତା ଦରକାର ।

ତାଙ୍କର ଚିତ୍ରଶୈଳୀ ସଂପର୍କରେ ଆଲୋଚନା କରିବା ମୋ ପକ୍ଷରେ ଧୃଷ୍ଟତା ହେବ । ଲଳିତ କଳା ଏକାଡେମୀରେ କାର୍ଯ୍ୟରତ ଥିବାରୁ ତାଙ୍କର ଭିନ୍ନ ଭିନ୍ନ ସୃଷ୍ଟି ସଂସ୍ପର୍ଶରେ ମୁଁ ଆସିଛି । ଏକାଡେମୀ ସଂଗ୍ରହରେ ଥିବା ତାଙ୍କର ପ୍ରଥମ ଚିତ୍ର ମେଘଦୂତ (ୱାସ୍) କାଳୀୟ ଦଳନ (ଗୋଟିଏ ପର୍ଯ୍ୟାୟର ଚିତ୍ର) ଯାହାକି ତାଙ୍କ ବିବର୍ତ୍ତିତ ଶୈଳୀର ସନ୍ଧିକ୍ଷଣର ଚିତ୍ର । ସବୁକୁ ତୁଳନା କରିଛି । ଗୋଧୂଳି ଚିତ୍ର ଏକାଡେମୀ ପକ୍ଷରୁ ଅଭିନନ୍ଦନ ପତ୍ରରୂପେ ପ୍ରକାଶିତ ହୋଇ ଅଜସ୍ର ରସିକଙ୍କ ଆଦର ଲାଭ କରିଥିଲା, ଯାହାକି ତାଙ୍କ ବର୍ତ୍ତମାନ ଶୈଳୀର ଚିତ୍ର ତୁଳନାରେ ଯଥେଷ୍ଟ ଅଧିକ ଲୋକପ୍ରିୟ ଥିଲା । ମୂଳ ଶୈଳୀରେ ନୂତନ ମୋଡ଼ଦେବା ପର୍ଯ୍ୟାୟର

ଏକ ଗୋଧୂଳି ଚିତ୍ର ମୋ ମତରେ ତାଙ୍କ ପରୀକ୍ଷାନିରୀକ୍ଷାର ଏକ ମାଇଲଖୁଣ୍ଟ । ତାଙ୍କ ଶୈଳୀକୁ କେତେକ ଶିଳ୍ପୀ ଅନୁକରଣ କରିଥିବା ମୋ ନଜରକୁ ଆସିଛି । ସେ ସର୍ବଭାରତୀୟ ସ୍ତରରେ ନିଜପାଇଁ ସ୍ୱତନ୍ତ୍ର ସ୍ଥାନ ନିରୂପଣ କରିନେଲେ । ତାଙ୍କର ଚିତ୍ରଶୈଳୀ ଶେଷରେ ହୋଇଗଲା ତାଙ୍କର ହସ୍ତାକ୍ଷର ।

ତାଙ୍କ କଳାର ବିବର୍ତ୍ତନ ଶୈଳୀ ଶିଳ୍ପୀ ସମାଜକୁ ଅନୁପ୍ରାଣିତ, ଉପକୃତ କରିଚାଲିବ । ଜାଣତରେ ହେଉ ବା ଅଜାଣତରେ ହେଉ ସେମାନେ ତାଙ୍କ ଚିତ୍ର ଦ୍ୱାରା ପ୍ରଭାବିତ ହେଉଥିବେ । ଏଠାରେ ଚଳଚ୍ଚିତ୍ର ଜଗତର କିମ୍ବଦନ୍ତୀ ପୁରୁଷ ଅମିତାଭ ବଚ୍ଚନଙ୍କ ଏକ ଉକ୍ତିକୁ ଉଦ୍ଧାର କଲେ ହୁଏ ତ ଅପ୍ରାସଙ୍ଗିକ ହେବ ନାହିଁ । The Hundred Luminaries of Hindi Cinema ସଂକଳନର ମୁଖବନ୍ଧରେ ସେ ମୁକ୍ତକଣ୍ଠରେ ସ୍ୱୀକାର କରି ଲେଖିଛନ୍ତି -

But as for as the ultimate in performance is concerned, it is Dilip Kumar. I think, some of us would be lying if we said that consciously or unconscioulsy Dilip Sab did not influence our performances in some way or other. His performance was so overpowering that we simply cannot overlook or side step them.

ଏଇ ପରିପ୍ରେକ୍ଷୀରେ ଶିଳ୍ପୀ ଚନ୍ଦ୍ରଶେଖରଙ୍କ ସାଧନା ଓ ସିଦ୍ଧିକୁ ବିଚାର କଲେ କ'ଣ ଅତିରଂଜିତ ହେବ ?



## ରାଜୀବ ଲୋଚନ ସାହୁ

### ଦେହାନ୍ତ

ମୁଁ ଯେତେବେଳେ ଆର୍ଟ କଲେଜରେ ପଢ଼ିବାପାଇଁ ଭୁବନେଶ୍ୱର ଗଲି ବାପା ମୋତେ ଚନ୍ଦ୍ରଶେଖର ରାଓଙ୍କୁ ପ୍ରଥମେ ପରିଚୟ କରାଇ ଦେଇଥିଲେ । କାରଣ ରାଓ ସାରେ ଓ ବାପା ଖଲିକୋଟ ଆର୍ଟ କଲେଜରେ ଏକା ସାଥିରେ ରହିଥିଲେ ଓ ପେଣ୍ଟିଙ୍ଗ୍ ମଧ୍ୟ ଇଣ୍ଡିଆନ ଷ୍ଟାଇଲିରେ କରୁଥିଲେ । ତେଣୁ ବାପା ତାଙ୍କୁ ବହୁତ ଭଲ ପାଉଥିଲେ । ମୁଁ ଆଡ଼ମିଶନ ପରେ ରାଓ ସାରଙ୍କ ଘରକୁ ସବୁଦିନ ପ୍ରାୟ ଯାଏ ଏବଂ ରାଓ ସାରେ ଶ୍ରଦ୍ଧାପୂର୍ବକ ମୋତେ ପାଖରେ ବସାଇ ତାଙ୍କ ପୁରୁଣା ସ୍ମୃତିକୁ ରଙ୍ଗ ଦେଉଥାନ୍ତି ଏବଂ ସେ ପୁରୁଣା ଦିନର କଥା କହନ୍ତି ଓ ପେଣ୍ଟିଙ୍ଗଗୁଡ଼ାକ କାଢ଼ି ଦେଖାନ୍ତି । ମୁଁ ଧୀରେ ଧୀରେ ରାଓ ସାରଙ୍କ ଚିତ୍ରଗୁଡ଼ିକ ପ୍ରତି ବହୁତ ଆକର୍ଷିତ ହେବାରେ ଲାଗିଲି । ପଢୁଥିବା ସମୟରେ ମୁଁ ୱାସ୍ ପେଣ୍ଟିଙ୍ଗ କିଛି କରିବା ଆରମ୍ଭ କଲି ଏବଂ ତାପରେ ରାଓ ସାରଙ୍କ ଶୈଳୀରେ

ପ୍ରଭାବିତ ହୋଇ ଚିତ୍ର ମଧ୍ୟ ଆଙ୍କିବାରେ ଲାଗିଲି ଯାହାକି ସାର୍‌ଙ୍କ ଚିତ୍ର ସାଥିରେ ମିଶି ଯାଇଥିଲା । ରାଓ ସାରେ ଏହି ଚିତ୍ରଗୁଡ଼ିକ ଦେଖି ପ୍ରବଳ ରାଗିବା ଆରମ୍ଭ କରିଥିଲେ । କିନ୍ତୁ ମୁଁ ଯେତେ ଚେଷ୍ଟା କଲେ ବି ଚିତ୍ରଗୁଡ଼ିକ ରାଓ ସାରଙ୍କ ଭଳି ହୋଇଯାଉଥିଲେ । ସମସ୍ତେ ମୋ ଚିତ୍ରକୁ ରାଓସାରଙ୍କ ଚିତ୍ର ବୋଲି ଭାବୁଥିଲେ । ପ୍ରଦୋଷ, ତାରାକାନ୍ତ ଓ ଜଗନ୍ନାଥ ମିଶି ଆମେମାନେ ମ୍ୟୁଜିୟମ ପାଇଁ ପ୍ରଥମେ ବଡ଼ବଡ଼ ମୁରାଲ ପେଣ୍ଟିଙ୍ଗ ଆରମ୍ଭ କରିଥିଲୁ । ମୁଁ କିଛି ଦିନ କାମ କଲାପରେ ଆଉ ସେହି କାମ ନ କରିବାକୁ ରାଓ ସାରେ କହିଲେ । ତେଣୁ ମୁଁ ନିଜକୁ ବୁଝାଇବାକୁ ଘରେ ଛୋଟ ଛୋଟ ପେଣ୍ଟିଙ୍ଗ ଆରମ୍ଭ କଲି ।

କଲେଜରେ ପଢ଼ୁଥିବା ପାଞ୍ଚ ବର୍ଷ ପର୍ଯ୍ୟନ୍ତ ମୁଁ ରାଓ ସାର୍‌ଙ୍କ ସାଥିରେ ଜଡ଼ିତ ରହି ତାଙ୍କର ଚିତ୍ରର ଶୈଳୀକୁ ପୁରାପୁରିଭାବେ ନକଲ କରିଦେଉଥିଲି । ତଥାପି ସାରେ ଉଦାରଭାବ ଦ୍ୱାରା ମୋ ଉପରେ ରାଗି ପାରୁନଥିଲେ । ସେ ମୋତେ ଯେତେ ଗାଳି ଦେଲେ ମଧ୍ୟ ମୁଁ ଗୁରୁଙ୍କ ଆଶୀର୍ବାଦ ଭାବି ଆଦରି ନେଉଥିଲି । ମୋର ତାଙ୍କ ପ୍ରତି ଅପାର ଓ ଅଗାଢ଼ ଭକ୍ତି ଥିଲା । ସେ ମୋ ପାଇଁ ଦ୍ରୋଣ ଗୁରୁ । ଚିତ୍ର ଆରମ୍ଭ କରିବା ପୂର୍ବରୁ ମୋ ଗୁରୁ ଚନ୍ଦ୍ର ରାଓଙ୍କ ଚରଣକୁ ପ୍ରଥମେ ପ୍ରଣାମ କରି ମୁଁ ମୋର ରଙ୍ଗକୁ ବିକ୍ଷିପ୍ତ କରେ ଓ ରୂପ ଦିଏ । ଧୀରେ ଧୀରେ ମୁଁ ଓଡ଼ିଶା ଛାଡ଼ି ବାହାରକୁ ଚାଲିଆସିଲି । ସାରଙ୍କଠାରୁ ଦୂରରେ ରହିଲା ପରେ ଧୀରେ ଧୀରେ ମୋର ଶୈଳୀକୁ ପରିବର୍ତ୍ତନ କରିବାକୁ ପ୍ରୟାସ କଲି । ହେଲେ ମଧ୍ୟ ଗୁରୁଙ୍କୁ ଆଖି ଆଗରେ ରଖି ଚିତ୍ର ଆରମ୍ଭ କରିବାର ପରମ୍ପରା ଯୋଗୁଁ ଚିତ୍ର ଗୁଡ଼ିକର ତାଙ୍କର ଚିତ୍ର ସାଥିରେ ସାମଞ୍ଜସ୍ୟ ରହିଯାଏ । ମୁଁ ବନାରସରେ ରହିବାର ସୌଭାଗ୍ୟ ମିଳିଲା । ମୋର ବନ୍ଧୁ ଓ ଚନ୍ଦ୍ରରାଓଙ୍କ ଜ୍ୱାଇଁ ପ୍ରଦୋଷ ମଧ୍ୟ ବନାରସରେ ରହନ୍ତି । ରାଓ ସାର ବନାରସ ଆସିଲେ ତାଙ୍କ ସହିତ ଦେଖା ହୁଏ । ସେ ମୋ ଘରକୁ ଆସନ୍ତି ଓ ମୋର ନୂଆ ଚିତ୍ରଗୁଡ଼ିକୁ ଆଗ୍ରହ ସହକାରେ ଦେଖନ୍ତି । ଚିତ୍ର ସମ୍ପର୍କରେ ଆଲୋଚନା କରି ମୋତେ ବିଭିନ୍ନ ଉପଦେଶ ଦିଅନ୍ତି । ତାଙ୍କୁ ଦେଖିଲା ପରେ ମୁଁ ମୋର ଗୁରୁଙ୍କୁ ପାଇ ଅତି ଗର୍ବିତ ହୋଇପଡ଼େ । ସେ ମଧ୍ୟ ଅନ୍ତରରେ ମୋତେ ଶିଷ୍ୟରୂପେ ଗ୍ରହଣ କରନ୍ତି କିନ୍ତୁ ତାହା ବାହାରେ ପ୍ରକାଶ କରନ୍ତି ନାହିଁ ।

ଆଜି ମୋର ରାଓସାର ନାହାଁନ୍ତି । ବନାରସରେ ରହି ମୁଁ ତାଙ୍କର ଗୁଣଗାନ କରୁଥିବି ।



# ରବୀନ୍ଦ୍ରନାଥ ସାହୁ

## ଭିନ୍ନ ଭାବନାର ଶିଳ୍ପୀ

ଚନ୍ଦ୍ରଶେଖର ରାଓ ଥିଲେ ଜଣେ ଭିନ୍ନ ଭାବନାର ଚିତ୍ରଶିଳ୍ପୀ । ଉତ୍କଳୀୟ ଚିତ୍ରକଳା ପଟ୍ଟଚିତ୍ରର ପୃଷ୍ଠଭୂମିରେ ଆଧୁନିକତାର ପ୍ରଲେପଦେଇ ସେ ଯେଉଁ ନୂତନଶୈଳୀର ମିଥ୍ ସୃଷ୍ଟି କରୁଥିଲେ ତାହା ବୋଧହୁଏ ତାଙ୍କୁ ଚିତ୍ରଜଗତରେ ଭିନ୍ନଭାବନାର ସ୍ରଷ୍ଟା ବୋଲି ପରିଚିତ କରାଇ ପାରିଥିଲା । ଏହି ସ୍ୱକୀୟ ଶୈଳୀର ପରମ୍ପରା ତାଙ୍କୁ ଜଣେ ଲବ୍ଧପ୍ରତିଷ୍ଠ ଶିଳ୍ପୀ ଭାବେ ଗଢ଼ି ତୋଳିବାକୁ ପ୍ରେରଣା ଦେଉଥିଲା ।

ଗଂଜାମ ଜିଲ୍ଲାର ମଥୁରା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ ଏହି ମହାନଶିଳ୍ପୀ ଜଣକ । କଳାଐତିହ୍ୟପୂର୍ଣ୍ଣ ମଥୁରା ଗ୍ରାମଟିରେ ବହୁପ୍ରକାର ହସ୍ତଶିଳ୍ପୀ ପରିବାର ବସବାସକରି ଆସୁଥାନ୍ତି, ମନ୍ଦିର ସ୍ଥାପତ୍ୟର କୁଶଳୀ ବିନ୍ଧାଣୀଙ୍କ ଠାରୁ ଆରମ୍ଭ କରି କଂସା କାରିଗର, ଚିତ୍ରକର, ମୁଖା, ଗୋବର କଣ୍ଢେଇ, ଲାଖ କାରିଗରୀ ବ୍ୟତୀତ ବିଭିନ୍ନ ଲୋକସଂସ୍କୃତି ସାଧକମାନଙ୍କର ସାଧନାକ୍ଷେତ୍ର ଏଇ ମଥୁରାର ପଲ୍ଲୀ ପରିବେଶରେ ଜନ୍ମ ହୋଇ ଚନ୍ଦ୍ରଶେଖରଙ୍କ ବାଲ୍ୟକଳାପ୍ରତିଭା ନିଜ ପରିବାରରୁ ହିଁ ଆରମ୍ଭ ହୋଇଥିଲା ।

ମାଟ୍ରିକ୍ ପରୀକ୍ଷାପରେ କିଛିଦିନ ଶିକ୍ଷକ ହୋଇ ତତ୍କାଳୀନ ଖଲ୍ଲିକୋଟ ମହାରାଜା ରାମଚନ୍ଦ୍ର ମର୍ଦ୍ଦରାଜଙ୍କ ସହାୟତାରେ ୧୯୫୮ ମସିହାରେ ଖଲ୍ଲିକୋଟ କଳା ବିଦ୍ୟାଳୟରେ ଭର୍ତ୍ତିହେଲେ ଓ କୃତିତ୍ୱର ସହ ଭାରତୀୟ ଚିତ୍ରକଳାରେ ପାଶ୍ କଲେ । ସେତେବେଳେ ଚିତ୍ରକଳା ପାଠ୍ୟକ୍ରମରେ ଶାନ୍ତିନିକେତନୀୟ ଶୈଳୀକୁ ବେଶୀ ଗୁରୁତ୍ୱ ଦିଆଯାଉଥିଲା । ଚନ୍ଦ୍ରଶେଖର କିନ୍ତୁ ସେଥିରେ ସନ୍ତୁଷ୍ଟ ନ ଥିଲେ । ସେ କିପରି ଉତ୍କଳୀୟ ଚିତ୍ରଧାରା ସହ ନିଜର ଏକ ସ୍ୱତନ୍ତ୍ର ଶୈଳୀ ସୃଷ୍ଟି କରିବେ ଅନୁଧ୍ୟାନ କଲେ । ତାଙ୍କ ଚିତ୍ରକଳାର ବିଷୟବସ୍ତୁ ପ୍ରାସଙ୍ଗିକତା ଦୃଷ୍ଟିରୁ ଉପଭୋଗ୍ୟ । ମୁଖ୍ୟ ଚରିତ୍ରଗୁଡ଼ିକୁ ଖୁବ୍ ଆବେଦନମୟ କରିବା ପାଇଁ ସେ ତତ୍ପରତା ପ୍ରକାଶ କରିଛନ୍ତି । ଚିତ୍ରକଳା ଏକ ସ୍ୱତନ୍ତ୍ର ସ୍ୱପ୍ନିଳ ଆବେଦନ, ଯେଉଁ ପଟ୍ଟଭୂମି ଉପରେ ରଂଗ ଓ ତୂଳୀର ସ୍ପର୍ଶରେ ଚିତ୍ରକରର ପରିକଳ୍ପନା ରୂପ ନିଏ, ତାହା ଯଦି କଥା ନ କହିଲା ତାହେଲେ ସେ ଚିତ୍ର ନିର୍ଜୀବ ହୋଇଉଠେ, ନିଷ୍ପନ୍ଦ ଶିଳ୍ପୀ ସେଇଠି ନିଜର ପରିଚୟ ହଜେଇ ବସେ । ସବୁ ସୃଷ୍ଟିରେ ଚିତ୍ରଶିଳ୍ପୀର ଆବେଦନ ଜୀବନ୍ତ ହେବା ଦରକାର । ଏ ହେଲା ଚନ୍ଦ୍ରଶେଖରଙ୍କର ଚିତ୍ରକଳାର ମୌଳିକ ଦର୍ଶନତତ୍ତ୍ୱ ।

ତାଙ୍କର ଚିତ୍ରକଳାର କାବ୍ୟିକ ରୂପ ବେଶ୍ ଛନ୍ଦୋମୟ ଏବଂ ଶୃଙ୍ଗାରଧର୍ମୀ । ପରନ୍ତୁ ଯୌନ ଆବେଦନ-ବର୍ଜ୍ଜିତ, ହାଲ୍କା ରଂଗ-ବିନ୍ୟାସ ଏବଂ ବଳିଷ୍ଠ ରେଖାଙ୍କନ, ବିସ୍ତାରିତ ଚକ୍ଷୁପ୍ରାନ୍ତ, ସ୍ଥୂଳଶରୀର । ସର୍ବୋପରି ପଟ୍ଟଚିତ୍ର ଓ ପୋଥିଚିତ୍ରର ସୌସାଦୃଶ ଚରିତ୍ର

ସୌଷ୍ଠବତାର ଆଭାସ ଶିଳ୍ପୀଙ୍କର ପାରମ୍ପରିକ ଚିତ୍ରକଳା ପ୍ରତି ଯେଉଁ ଅଦମ୍ୟ ମୋହ ତାହା ବେଶ୍ ସୂଚାଇ ଦେଇଥାଏ ।

ଏହି ଭିନ୍ନ ଭାବନାର ଶିଳ୍ପୀ ଜଣକ ଥିଲେ ଜାତୀୟ ଓ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ । ବହୁ ପ୍ରଦର୍ଶନୀରେ ତାଙ୍କ ଚିତ୍ରକଳା ପ୍ରଜ୍ଜ୍ୱଳିତ ହୋଇ ପୁରସ୍କୃତ ହୋଇଛି । ଓଡ଼ିଶାର ଚିତ୍ରକଳାର ଗୌରବ ବୃଦ୍ଧି କରାଇଛନ୍ତି । ଚାକିରୀ ଜୀବନରେ ଓଡ଼ିଶାର ହସ୍ତକଳା ପ୍ରସାର କ୍ଷେତ୍ରରେ ବହୁ ଉଦ୍ୟମ କରିଛନ୍ତି । ହଜାର ହଜାର ନୂତନଧରଣର ନମୁନା ସୃଷ୍ଟିକରି ବଜାର ଅଭିମୁଖୀ କରାଇଛନ୍ତି । ହସ୍ତଶିଳ୍ପ ଜଗତର ଏକ ଭିନ୍ନ ସ୍ରଷ୍ଟା ଭାବେ ତାଙ୍କର ନମୁନାଗୁଡ଼ିକ ଚିହ୍ନଟ ହୋଇ ବହୁ ଛାତ୍ରଛାତ୍ରୀଙ୍କ ଦ୍ୱାରା ସଫଳ ଉତ୍ପାଦନ ହୋଇ ପାରିଛି । ଅନେକ ସ୍ଥାନ ଭ୍ରମଣ କରି ସେଠାକାର ବୈଷୟିକ ଜ୍ଞାନକୌଶଳ ଆହରଣ କରି ତାଲିମ କେନ୍ଦ୍ରରେ ଶିକ୍ଷାର୍ଥୀମାନଙ୍କୁ ବିତରଣ କରିଛନ୍ତି ।

ଜଣେ ହସ୍ତଶିଳ୍ପୀ ତଥା ପାରମ୍ପରିକ ପଟ୍ଟଚିତ୍ର ଶିଳ୍ପୀ ହିସାବରେ ରାଜ୍ୟ ହସ୍ତଶିଳ୍ପ ନକ୍ସା ଓ ନମୁନାକେନ୍ଦ୍ରର ବରିଷ୍ଠ ଉପାଙ୍କନକାରୀ ଭାବେ ଦାୟିତ୍ୱ ନେବା ପରେ ପରେ ତାଙ୍କ ସହ ମୋର ପରିଚୟ ହୁଏ । ଏମିତି ଅନେକ ସ୍ଥାନରେ ତାଙ୍କ ସହିତ ବିଭିନ୍ନ କାର୍ଯ୍ୟକ୍ରମରେ ଅଂଶଗ୍ରହଣ, ଆଲୋଚନା, ତର୍କବିତର୍କ ମଧ୍ୟରେ ସମୟ ଅତିକ୍ରାନ୍ତ ହୋଇଛି । ମୁଁ ଲକ୍ଷ୍ୟ କରିଛି ଗୋଟିଏ ଦିଗରେ ଚାକିରୀରେ ଥାଇ ସେ ଯେପରି ନିୟନ୍ତ୍ରିତ ହୋଇ କାର୍ଯ୍ୟ କରୁଥିଲେ, ସେପରି ନିଜର ସଫଳ ସୃଷ୍ଟି କରିବାରେ ସେପରି ସମର୍ଥ ଥିଲେ । ଏହା ତାଙ୍କ କଠୋର ପରିଶ୍ରମର ସଫଳତା ।

ଭାରତ ସରକାରଙ୍କ ସଂସ୍କୃତି ବିଭାଗରୁ ସିନିଅର ଫେଲୋସିପ୍ ପାଇ ଗୀତଗୋବିନ୍ଦକୁ ଆଧାର୍‌କରି ଅନେକ ସୁନ୍ଦର ଚିତ୍ର ଆଙ୍କିଥିଲେ । 'ଚନ୍ଦ୍ରାୟନ'ର ନାୟକ ଭାବେ ସେ ଚିରସ୍ମରଣୀୟ ହୋଇ ରହିଗଲେ ପ୍ରତ୍ୟେକ ଶିଳ୍ପୀଙ୍କ ହୃଦୟରେ ।

■

## କେଦାରନାଥ ନାୟକ

## ଧ୍ରୁବତାରା

ମୋର କର୍ମକ୍ଷେତ୍ର ଏକ କଳାନୁଷ୍ଠାନ ହୋଇଥିବାରୁ ମୋର ସୌଭାଗ୍ୟ ଯେ ମୁଁ ବହୁ ଚିତ୍ର ଶିଳ୍ପୀଙ୍କ ସଂସ୍ପର୍ଶରେ ଆସିପାରିଛି । ଭାରତର ଯେଉଁ କେତେଜଣ ଖ୍ୟାତନାମା ଚିତ୍ରଶିଳ୍ପୀଙ୍କୁ ମୁଁ ଅତି ନିକଟରୁ ଦେଖିଛି, ଯେଉଁମାନଙ୍କ ସଙ୍ଗେ ଚିତ୍ରକଳା ବିଷୟରେ ଏବଂ ନିଜ ଦୁଃଖସୁଖ ବିଷୟ ଆଲୋଚନା କରିବାର ସୁଯୋଗ ପାଇଛି, ସେମାନଙ୍କ ମଧ୍ୟରୁ ଶ୍ରୀ ଏନ୍. ଚନ୍ଦ୍ରଶେଖର ରାଓ ଥିଲେ ଅନ୍ୟତମ । ଜଣେ ମଣିଷ ପାଖରେ ଯେଉଁ ମଣିଷପଣିଆ

ରହିବାକଥା, ସେହି ମର୍ଣ୍ଣବପଣିଆ ଭରି ରହିଥିଲା ରାଓସାରଙ୍କ ପାଖରେ । ରାଓ ସାରଙ୍କୁ ନମସ୍କାର କରିବା ପରେ ତାଙ୍କର ହସହସ ମୁହଁର ପ୍ରତି ନମସ୍କାର ଭାବ ବହୁଦିନ ପର୍ଯ୍ୟନ୍ତ ମାନସପଟରେ ରହିବ ନିଶ୍ଚୟ ।

ଶ୍ରୀ ଚନ୍ଦ୍ରଶେଖର ରାଓ ତାଙ୍କର ଛବି ଆଙ୍କିବା ବୃତ୍ତି ଜୀବନର ଶେଷ ଅବସ୍ଥା ପର୍ଯ୍ୟନ୍ତ ବଳବତ୍ତର ରଖିପାରିଥିଲେ, ଯାହାକି ଏତେ ସହଜ କଥା ନୁହେଁ । ଏଥିରୁ ତାଙ୍କ ମନୋବଳର ଦୃଢ଼ତା ଓ ଏକାଗ୍ରତାର ପ୍ରମାଣ ମିଳେ । ଛବି ଆଙ୍କୁଥିବା ଲୋକମାନଙ୍କୁ ସେ ବହୁତ ଭଲ ପାଉଥିଲେ । ଘଟଣା ଚକ୍ରରେ ସେ ଥରେ ଆମ ଘରକୁ ଆସିଥିଲେ । ଘଟଣା ଚକ୍ର କହିବାର ଅର୍ଥ ମୁଁ ତାଙ୍କୁ ନିମନ୍ତ୍ରଣ କରି ନଥିଲି, କି ସେ ଆମ ଘରକୁ ଆସିବା ଉଦ୍ଦେଶ୍ୟରେ ଆସି ନ ଥିଲେ । ତାଙ୍କୁ ସେହି ସମୟରେ ମୁଁ କାଗଜରେ ଆଙ୍କିଥିବା କିଛି ଚିତ୍ର ଦେଖାଇଥିଲି । ଛବି ଦେଖି ସେ କହିଲେ - ଏଇଟା ଭଲ ହୋଇଛି ଏଇଟାକୁ ଟିକିଏ ଏମିତି କର ବା ଏଇଟା ଭଲ ହୋଇନି । ମୋତେ ବହୁତ ଉତ୍ସାହ ଓ ପ୍ରେରଣା ଦେଲେ ଆହୁରି ଛବି ଆଙ୍କିବା ପାଇଁ । ପରେ ମୁଁ ଏକ ଚିତ୍ରକଳା ପ୍ରଦର୍ଶନୀ ଭୁବନେଶ୍ୱରରେ କଲି ଏବଂ ଏହି ପ୍ରଦର୍ଶନୀ କରିବା ପାଇଁ ଚିତ୍ର ଆଙ୍କିବା ପଛରେ ଯେଉଁମାନଙ୍କ ପ୍ରେରଣା ପାଇଥିଲି ସେମାନଙ୍କ ମଧ୍ୟରୁ ଶ୍ରୀ ରାଓ ଥିଲେ ଅନ୍ୟତମ । ମୋ ଚିତ୍ର ଦେଖିବା ପରେ ରାଓ ସାର୍ ମନଦୁଃଖରେ କହିଥିଲେ, ଯାହା ହେଉ ତମେ ଚିତ୍ରରେ ପାଠ ନ ପଢ଼ି ମଧ୍ୟ ଚିତ୍ର ଆଙ୍କୁଚ ହେଲେ ଚିତ୍ରକଳାରେ ପାଠପଢ଼ି ସେହି ସଂସ୍ଥାମାନଙ୍କରେ ରହି ମଧ୍ୟ ଶିଳ୍ପୀମାନେ ଚିତ୍ର ଆଙ୍କିବାରେ ସମୟ ଦେଉ ନାହାନ୍ତି ।

ଚିତ୍ରପ୍ରତି ଆଗ୍ରହ ରଖିଥିବା ଯେକୌଣସି ବ୍ୟକ୍ତି ରାଓ୍ସାରଙ୍କ ଛବି ଦେଖି ନିଶ୍ଚୟ କହି ଦେଇପାରିବ ଯେ ଏହି ଛବିଟି ଶ୍ରୀ ଏନ୍.ଚନ୍ଦ୍ରଶେଖର ରାଓଙ୍କର । ଏଥିରୁ ଜଣେ ଶିଳ୍ପୀର ପରିପକ୍ୱତା ବୁଝାପଡ଼େ । ମୋଟାମୋଟି ଭାବରେ ତାଙ୍କ ଛବି ଅଙ୍କାରେ ଓଡ଼ିଶାର ଇଣ୍ଡିଆନ୍‌ପେଣ୍ଟିଙ୍ଗ୍ ବିଭାଗ ରୁଚିମନ୍ତ ଓ ବଳିଷ୍ଠ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ରାଓ ସାରଙ୍କର ମଠାକନା ଉପରେ ଜଳରଙ୍ଗରେ ଅଙ୍କାଯାଇଥିବା ଗାଧୁଆ ତୁଠ, ଗୋଧୂଳି, ଶ୍ରୀକୃଷ୍ଣଙ୍କ ଲୀଳା, ଗୀତଗୋବିନ୍ଦ ଇତ୍ୟାଦି ଚିତ୍ର ଯେଉଁମାନେ ଦେଖିଛନ୍ତି, ସେମାନେ ନା ରାଓ ସାରଙ୍କୁ ନା ତାଙ୍କ ଚିତ୍ରକୁ ଭୁଲିପାରିବେ । ତାଙ୍କର ଛବିଗୁଡ଼ିକ ବ୍ରାଇଟକଲରର । ତାଙ୍କ ବ୍ୟବହାର ବେଶ୍ କୋମଳ ଓ ହୃଦୟସ୍ପର୍ଶୀ ଓ ମନୋମୁଗ୍ଧକର ।

ତାଙ୍କ ଦେହ ଖରାପ ଅଛି ବୋଲି ଶୁଣିଥିଲି । ହଠାତ୍ ଦିନେ ତାଙ୍କର ଛାତ୍ର ରାମହରି ଜେନାଙ୍କ ମନର ଅବସ୍ଥା ଦେଖି ପଚାରିବାରୁ ସେ କହିଲେ ଆପଣ କାହାକୁ କହିବେନି ଯଦି କହିବି । ରାଓ ସାରଙ୍କୁ...। ପୁଣି ଦିନେ ଶୁଣିଲି ସେ କଳିଙ୍ଗ ହସପିଟାଲରେ ଆଡ଼ମିସନ୍ ହୋଇଛନ୍ତି । ମୁଁ ଏବଂ ରାମହରି ବାବୁ ଡାକ୍ତରଖାନାକୁ

ଗଲୁ । ବହୁତ ଝଡ଼ି ଯାଇଥାନ୍ତି । ନାକରେ ଅମ୍ଳଜାନ ନଳୀ ଲାଗିଥାଏ । ସେହିଦିନ ତାଙ୍କର ପ୍ରିୟ ବଂଧୁ ଡକ୍ଟର ଦିନନାଥ ପାଠୀଙ୍କ ସହିତ ଦେଖାହେଲା । ସେ ବହୁ ବ୍ୟସ୍ତ ଓ ଚିନ୍ତିତ ଥିଲେ । ବୋଧହୁଏ ସେ ବୁଝିପାରୁଥିଲେ ରାଓ ସାର ଓ ତାଙ୍କ ଭିତରେ ଥିବା ବଂଧୁତାର ପୂର୍ଣ୍ଣଚ୍ଛେଦ ପଡ଼ିବାକୁ ଯାଉଛି । ପାଠୀ ସାର ଏତେ ବ୍ୟସ୍ତ ହୋଇପଡୁଥିଲେ ଯେ ତାଙ୍କୁ ମୁଁ କହିଥିଲି, ''ଏଇତ ସତ୍ୟ, ଏଇତ ଜୀବନ । ଆପଣ ଏତେ ବ୍ୟସ୍ତ ହୋଇ ପଡୁଛନ୍ତି କାହିଁକି ?''

ରାଓସାର୍ ମରଶରୀରକୁ ନେଇ ଆମେ ପୁରୀ ଯାଇଥିଲୁ । ସ୍ୱର୍ଗଦ୍ୱାରରେ ରାଓସାର୍ଙ୍କ ଶରୀରକୁ ରଖିବା ବେଳେ ମୋର ମନେ ହେଉଥିଲା, ଓଡ଼ିଆ ଚିତ୍ରକଳା ଜଗତର ଧ୍ରୁବତାରା ପୁରୀର ସମୁଦ୍ରରେ ସତେ ଯେପରି ଖସି ପଡ଼ିଲା । ହେଲେ ତାଙ୍କ କୃତିକୁ ଛାଡ଼ି ଓଡ଼ିଶାର ଚିତ୍ରକଳା ଇତିହାସ ଲେଖାଯାଇପାରିବନି ।

■

## ଦିଲ୍ଲୀପ ହାଲି

## ଚନ୍ଦ୍ରଶେଖରଙ୍କ ଚିତ୍ରକଳା : ଏକ ଆଲୋଚନା

ଅଲଇଣ୍ଡିଆ ସାଇକିଆଟ୍ରିକ୍ କନଫରେନସ୍ ଆନୁକୂଲ୍ୟରେ ରବୀନ୍ଦ୍ର ମଣ୍ଡପଠାରେ ଓଡ଼ିଶାର ବିଶିଷ୍ଟ ଚିତ୍ରଶିଳ୍ପୀ ଚନ୍ଦ୍ରଶେଖର ରାଓଙ୍କ ପ୍ରଦର୍ଶିତ କେତୋଟି ଚିତ୍ର ଦେଖିବାର ସୁଯୋଗ ମିଳିଥିଲା । ସିଲକ୍ କନା ଉପରେ ଜଳରଙ୍ଗରେ ଚିତ୍ରଣଗୁଡ଼ିକ ଉଭୟ ବର୍ଣ୍ଣବିନ୍ୟାସ ଓ ବିଷୟ ନିର୍ବାଚନ ତଥା ଯୋଜନାରେ ଏକ ସ୍ୱପ୍ନିଳ ପରିବେଶ ସୃଷ୍ଟି କରୁଥିଲା । ସ୍ୱଚ୍ଛ ଓ ଅସ୍ୱଚ୍ଛ ରଙ୍ଗ ସହ ଚାଇନିଜ୍ଇଙ୍କର ପ୍ରୟୋଗ, ଗୋଟିଏ ରଙ୍ଗ ଭିତରେ ଅନ୍ୟ ରଙ୍ଗର ପ୍ରବେଶ, ପାରମ୍ପରିକ ସ୍ପର୍ଶରେ ଆଧୁନିକ, ପୌରାଣିକ ଏବଂ ଗ୍ରାମ୍ୟଜୀବନର ସାମାଜିକ ବିଷୟବସ୍ତୁ, ସୂକ୍ଷ୍ମ ଓ ସାବଲୀଳ ତଥା ଗତିଶୀଳ ରେଖା ଦ୍ୱାରା ଚିତ୍ରଗୁଡ଼ିକ ଖୁବ୍ ହୃଦୟସ୍ପର୍ଶୀ ଲାଗିଥିଲା ।

ଶ୍ରୀ ରାଓ ଆନୁଷ୍ଠାନିକ ଶୈଳୀରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇଥିଲେ ହେଁ ଭାରତୀୟ ଚିତ୍ରଧାରାର ଆଦର୍ଶକୁ ଭୁଲିନାହାନ୍ତି । ରୂପ ସଂଯୋଜନା, ବର୍ଣ୍ଣ ସଂଯୋଜନା ତଥା ରେଖା ଓ ରଙ୍ଗର ଭାରସାମ୍ୟର ସମତା ରକ୍ଷାକରି ଯେଉଁ ସ୍ୱତନ୍ତ୍ର ଶୈଳୀ ସୃଷ୍ଟି କରିଛନ୍ତି ତାହା ଭାରତୀୟ ସମ ସାମୟିକ କଳାରେ ଏକ ମହାନ ଅବଦାନ ବୋଲି କୁହାଯିବ । ଏହା ପଛରେ ଖଲିକୋଟ ଚାରୁକଳା ମହାବିଦ୍ୟାଳୟର ପ୍ରଥମ ଅଧ୍ୟକ୍ଷ ସ୍ୱର୍ଗତ ଶରତଚନ୍ଦ୍ର ଦେବଙ୍କ ପରୋକ୍ଷ ପ୍ରେରଣା ନିହତ ବୋଲି ସେ ସ୍ୱୀକାର କରନ୍ତି । ସ୍ୱର୍ଗତ ଦେବ ପ୍ରାଚ୍ୟ ଓ ପାଶ୍ଚାତ୍ୟର ସମିଶ୍ରଣରେ ଏକ ନୂତନଧାରାକୁ ପ୍ରୟୋଗ କରି ପ୍ରକାଣ୍ଡକାୟ ଚିତ୍ରସବୁ ସୃଷ୍ଟି କରିଥିଲେ । ରଚନା ଶୈଳୀରେ ଭାରତୀୟ ଦର୍ଶନର ଚିନ୍ତାଧାରା ଅଧିକ ମାତ୍ରାରେ

ପ୍ରତିଫଳିତ ହେଉଥିଲା ତାଙ୍କ ଚିତ୍ରଗୁଡ଼ିକରେ । ଏଗୁଡ଼ିକ ଛାତ୍ରାବସ୍ଥାରେ ଶ୍ରୀ ରାଓଙ୍କୁ ପ୍ରଭାବିତ କରିଥିଲା । ଶୈଶବ ଓ କିଶୋର ପାରମ୍ପରିକ ଚିତ୍ରକାର ଗ୍ରାମରେ କଟିଥିଲା । ଗଞ୍ଜାମର ମଥୁରା (ପୋଲସରା ନିକଟ)ରେ ଲୋକ କଳା ଯଥା-ଗୋବର କଣ୍ଢେଇ, କଳାସିନ୍ଦୁର ପେଡ଼ି, କଉଶାଳ, କାଷ୍ଠ ଚିତ୍ର, ପଥରରେ ସିଂହ, ପଥୁରି, ମନ୍ଦିରତୋଳା, ପଟଚିତ୍ର ଓ ଲୋକ ନୃତ୍ୟ ଯଥା ବାଉଁଶରାଣୀ ରାଧାପ୍ରେମଲୀଳା, ସଖୀନାଟ, ଯାତ୍ରା ଇତ୍ୟାଦି ଶୈଶବରୁ ତାଙ୍କ ମନରେ ଗଭୀର ରେଖାପାତ କରିଥିଲେ ।

ଦୀର୍ଘ ୪୦ ବର୍ଷ ଧରି ତାଙ୍କ ଚିତ୍ରରେ ପରୀକ୍ଷା ନିରୀକ୍ଷା କରି ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଶୈଳୀର ପ୍ରୟୋଗ କରି ସଫଳାତା ହାସଲ କରିଛନ୍ତି । କୃଷ୍ଣଲୀଳା ହେଉ କିମ୍ବା ଗାଧୁଆତୁଠ ହେଉ, ବା ଗ୍ରାମ୍ୟଲଳନା ହେଉ ବା ବିରହଣୀ ରାଇ ହେଉ ସମସ୍ତ ସୃଷ୍ଟିରେ ଓଡ଼ିଶାର ସଂସ୍କୃତି ଏବଂ କଳା ପରମ୍ପରା ନିହିତ । ସଫଳତାର ନିଦର୍ଶନ ସ୍ୱରୂପ ତାଙ୍କୁ ସର୍ବଭାରତୀୟ ମାନ୍ୟତା ମିଳିଛି । ଏହି ପରିପ୍ରେକ୍ଷୀରେ ଭାରତର କଳା ଐତିହାସିକ ଓ ଚିତ୍ରଶିଳ୍ପୀ ଡକ୍ଟର ଦିନନାଥ ପାଠୀ ତାଙ୍କର ଦୀର୍ଘ ପ୍ରବନ୍ଧ ''ପଚାଶ ବର୍ଷର ଚିତ୍ରକଳା''ରେ ଉଲେଖ କରିଛନ୍ତି ଯେ, ''ଚନ୍ଦ୍ରଶେଖର ରାଓ ବୋଧହୁଏ ଓଡ଼ିଶାରେ ସମସ୍ତଙ୍କଠାରୁ ବେଶୀ ସର୍ବଭାରତୀୟ ସ୍ତରରେ ପୁରସ୍କୃତ । ଏହାଛଡ଼ା ତାଙ୍କର ୧୪ଗୋଟି କଳା ଚିତ୍ର ପ୍ରଦର୍ଶନୀ ଚଣ୍ଡିଗଡ଼, ବମ୍ବେ, ଦିଲ୍ଲୀ, ବନାରସ, ପୁନା, ବାଙ୍ଗାଲୋର, କଲିକତା, ଭୁବନେଶ୍ୱର ପ୍ରଭୃତି ସହରରେ ଅନୁଷ୍ଠିତ ହୋଇଯାଇଛି ।

ମିଡ୍-ଡେ, ମହାରାଷ୍ଟ୍ର ଟାଇମସ୍, ନବଭାରତ, ଟାଇମସ୍, ଏସିଆନ୍ ଏଜ୍, ଅଫ୍ ଇଣ୍ଡିଆନ ଏକ୍ସପ୍ରେସ୍, ଟାଇମସ ଅଫ ଇଣ୍ଡିଆ, ବିଟ୍ରିବୁନ, ହେରାଲ୍ଡ଼, ଆଜ, ଦୈନିକ ଜାଗରଣ, ରାଷ୍ଟ୍ରୀୟ ସାହାରା, ଇନାଡ୍ରୁ, ଅମୃତ ବଜାର, ଇଷ୍ଟର୍ଣ୍ଣ ଟାଇମସ୍ ଓ ଓଡ଼ିଆ ପତ୍ରିକାମାନଙ୍କରେ ଭାରତର ପ୍ରତ୍ୟାତ କଳା ସମାଲୋଚକ ଦ୍ୟାନେଶ୍ୱର ନାଦକର୍ଣ୍ଣି, ରଣଜିତ ହସଖୋଟେ, ଡକ୍ଟର ବି.ଏନ୍.ଗୋସ୍ୱାମୀ, ଏମ୍.ଏସ୍.ଭଟି , ପ୍ରେମ ସିଂ, ମଧୁର କପିଳା, ଏନ୍, ମିଲିନ୍ଦ, ମନୋହର କାଉଲ, ଆର.ଏସ୍. ଯାଦବ, ବିଭୁତି ମିଶ୍ର, ପ୍ରଦୋଷ ମିଶ୍ର ଏବଂ ଅନେକ ତାଙ୍କ ଚିତ୍ର ସମ୍ପର୍କରେ ସମୀକ୍ଷାମାନ କରି ଦର୍ଶକ ଓ କଳାପ୍ରେମୀଙ୍କୁ ତାଙ୍କ ଚିତ୍ର ନିକଟକୁ ଟାଣି ଆଣିପାରିଛନ୍ତି । ପାରମ୍ପରିକ ନିର୍ଯ୍ୟାସକୁ ନେଇ ଆଧୁନିକ ପରିପ୍ରୟୋଗ ମାଧ୍ୟମରେ ଏକ ସ୍ୱତନ୍ତ୍ର ଧାରାର ସୃଷ୍ଟିକର୍ତ୍ତାଭାବେ ଓଡ଼ିଶାରେ କାହିଁକି ଓଡ଼ିଶା ବାହାରେ ବି ସେ ପରିଚିତ । ଗ୍ରାମ୍ୟ ଜୀବନର ନିଛକ ଅନୁଶୀଳନ, ପାରମ୍ପରିକ ପରିଭାଷା ଓ ଆଧୁନିକ ଚିନ୍ତାଧାରା ମଧ୍ୟରେ ସଠିକ ସମନ୍ୱୟ ରକ୍ଷାକରି ଯେଉଁ ଶୈଳୀ ସେ ସୃଷ୍ଟି କରିଛନ୍ତି ତାହା ବେଶ୍ ଲୋକପ୍ରିୟ । ଏହି ଲୋପ୍ରିୟତାରୁ ହିଁ ତାଙ୍କ ଚିତ୍ର ଭାରତ ବ୍ୟତୀତ ଜାପାନ, ଜର୍ମାନୀ, ଅଷ୍ଟ୍ରେଲିଆ, ଫ୍ରାନସ୍, ସାନଗୋଡ଼ିଆ(ୟୁଏ.ସ୍ଏ.) ଲଣ୍ଡନ ପ୍ରଭୃତି ମାନଙ୍କରେ ସଂଗୃହୀତ ।

ସରକାରୀ ସ୍ତରରେ ଶ୍ରୀ ରାଓ ଆସିକାସ୍ଥ ଟେକ୍‌ନିକାଲ ସ୍କୁଲରେ ୧୨ ବର୍ଷ ଶିକ୍ଷକତା ପରେ ରାଜ୍ୟ ହସ୍ତଶିଳ୍ପ ନକ୍‌ସା ଓ ନମୁନା କେନ୍ଦ୍ରରେ ବରିଷ୍ଠ ଡ଼ିଜାଇନର ଭାବେ ଅନ୍ୟୁନ ଦୁଇହଜାର ନକ୍‌ସା ଓ ନମୁନା ପ୍ରସ୍ତୁତ କରିଥିଲେ ଏବଂ ରାଜ୍ୟ ହସ୍ତଶିଳ୍ପ ତାଲିମ କେନ୍ଦ୍ରର ଅଧୀକ୍ଷକ ରୂପେ ଅନୁଷ୍ଠାନର ଉନ୍ନତିମୂଳକ କାମକରି କର୍ତ୍ତୃପକ୍ଷଙ୍କ ଶ୍ରଦ୍ଧାଭାଜନ ହୋଇପାରିଥିଲେ । ଏହି ଦାୟିତ୍ୱସହ ସେ ହସ୍ତଶିଳ୍ପ ପ୍ରକଳ୍ପ ଓ ନକ୍‌ସା ନମୂନା କେନ୍ଦ୍ରର ଡ଼େପୁଟି ମ୍ୟାନେଜର ଭାବେ ତାଙ୍କ ଦାୟିତ୍ୱ ସୁଚାରୁ ରୂପେ ନିର୍ବାହକରି ଅବସର ନେଇ କ୍ରିଏଟିଭ ସ୍କୁଲ ଅଫ୍ ଆର୍ଟର ପରିଚାଳନାସହ ନିଜ ସୃଷ୍ଟିରେ ମନୋନିବେଶ କରିଥିଲେ ।

■

## ମମତା ପାଠୀ

## ବଡ଼ ରାଓକାକା

ମୋର ନିର୍ବନ୍ଧବେଳେ ମୋର ଭାବୀଶ୍ୱଶୁର ଘର ତରଫରୁ ଯେତକ ବନ୍ଧୁବାନ୍ଧବ ଆସିଥିଲେ ତାଙ୍କରି ଭିତରେ ଚନ୍ଦ୍ରଶେଖର ରାଓ ଥିଲେ । ଏକଥା ମୁଁ ନିଶ୍ଚିତ ହେଲାବେଳକୁ ସେ ମୋ ପାଇଁ ଚନ୍ଦ୍ରଶେଖର ରାଓରୁ ରାଓକାକା ହୋଇସାରିଥିଲେ । ମୁଁ ବାହାହୋଇ ଶ୍ୱଶୁରଘରକୁ ଆସିଲାପରେ କେବଳ ଚନ୍ଦ୍ରଶେଖର ରାଓ ନୁହଁନ୍ତି ତାଙ୍କ ଭଳି ବହୁ ବିଶିଷ୍ଟ ଚିତ୍ରଶିଳ୍ପୀ ଆମଘରକୁ ଆସୁଥିଲେ । ସେମାନଙ୍କ ମଧ୍ୟରେ ଆଉ ଜଣେ ରାଓ ବି ଥିଲେ । ତେଣୁ ମୁଁ ଚନ୍ଦ୍ରଶେଖର ରାଓଙ୍କୁ ବଡ଼ ରାଓକାକା ଏବଂ ଡି.ଏନ୍. ରାଓଙ୍କୁ ସାନ ରାଓକାକା ବୋଲି ଡାକିଲି । ମୁଁ ପରେ ଜାଣିଲି ରାମହରି କାକା ଓ ଶିବରାମ କକାଙ୍କୁ ମିଶାଇ ଏମାନେ ସମସ୍ତେ ମୋର ଶ୍ୱଶୁରଙ୍କର ଅତ୍ୟନ୍ତ ଘନିଷ୍ଠ ବନ୍ଧୁ । ତାପରେ ମୋ ପାଖରେ କକାଙ୍କର ତାଲିକା ବଢ଼ିଗଲା । ମୁଁ ପରେ ପରେ ଚିତ୍ର ପ୍ରଦର୍ଶନୀ ଏବଂ ଶିଳ୍ପୀମାନଙ୍କର ବିଭିନ୍ନ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କଲି ଏବଂ ଜାଣିବାକୁ ପାଇଲି ଏମାନେ ସବୁ ଓଡ଼ିଶାର ବିଶିଷ୍ଟ ଚିତ୍ରଶିଳ୍ପୀ ।

ଚନ୍ଦ୍ରଶେଖର ରାଓକାକାଙ୍କ ସହିତ ମୋର ଦେଖା ହୋଇଥିଲା ପୁଣି କୋଣାର୍କରେ । ସେତେବେଳେକୁ ଫେବୃୟାରୀମାସ ହୋଇଥିଲା । ଜାନୁଆରୀ ମାସରେ ମୋର ବାହାଘର ସରିଥିଲା ଏବଂ ତାର କିଛିଦିନ ପରେ ଆମେ ସମସ୍ତେ ମିଶି କୋଣାର୍କ ଯିବାକୁ ବାହାରିଥିଲୁ । ମୋର ଶ୍ୱଶୁରଙ୍କ ଜନ୍ମଦିନ ଉପଲକ୍ଷେ ଗୋଟିଏ ଉତ୍ସବର ଆୟୋଜନ ହୋଇଥିଲା । କୋଣାର୍କରେ ଥିବା ପାନ୍ଥନିବାସରେ ସବୁ କକା ଓ ଖୁଡ଼ୀଙ୍କର ରହିବାର ବନ୍ଦୋବସ୍ତ ହୋଇଥିଲା । ଆମେ ସମସ୍ତେ ମାଘସପ୍ତମୀର ପାହାନ୍ତିଆ ପ୍ରହରରେ କୋଣାର୍କ ବେଳାଭୂମିରେ ଲକ୍ଷ ଲକ୍ଷ ଭକ୍ତଙ୍କ ଗହଣରେ ଠିଆହୋଇ ପ୍ରଥମ ସୂର୍ଯ୍ୟୋଦୟକୁ ଅପେକ୍ଷା କରିଥିଲୁ । ସେଦିନର ସେହି

ଅବିସ୍ମରଣୀୟ ମୁହୂର୍ତ୍ତ ଆଜି ବି ମୋ ମନରେ ସତେଜ ରହିଛି । ଏ ବର୍ଷ ଜାନୁୟାରୀ ୨୮ରେ ପୁଣି ମୋ ଶ୍ୱଶୁରଙ୍କ ୬୧ ବର୍ଷ ପୂରିଗଲା । ସେ କିନ୍ତୁ ବନାରସରେ ଥିଲେ ଓ ବଡ଼ ରାଓକାକା କଳିଙ୍ଗ ହସପିଟାଲରେ ମୃତ୍ୟୁ ସହିତ ସଂଗ୍ରାମ କରୁଥିଲେ ।

ଗତ ସେପ୍‌ଟେମ୍ବର ମାସରେ ଆମ ପରିବାରର ଘନିଷ୍ଠ ବନ୍ଧୁ ଡକ୍ଟର ଏବରହାର୍ଡ଼ ଫିସର୍ ଓ ତାଙ୍କ ପତ୍ନୀ ଶ୍ରୀମତୀ ବାର୍‌ବରା ଫିସର୍ ଆମ ଘରକୁ ଆସିଥିଲେ । ସେମାନେ ମୋ ବାହାଘରରେ ଯୋଗଦେଇନଥିବାରୁ ଆମ ଘରେ ତିନିଚାରି ଦିନ କଟେଇଲେ ଓ ମୋ ହାତ ରାନ୍ଧଣା ଖାଇଥିଲେ । ସେହି ରହଣି ଭିତରେ ଆମ ଘରେ ଗୋଟିଏ ଓଡ଼ିଶୀନୃତ୍ୟ ଆସରର ଆୟୋଜନ ହୋଇଥିଲା । ସେଥିରେ ଗୁରୁ ଗଜେନ୍ଦ୍ର ପଣ୍ଡା ଏବଂ ବିଶିଷ୍ଟ ଓଡ଼ିଶୀ ନୃତ୍ୟଗୁରୁ ଦେବ ପ୍ରସାଦ ଦାସଙ୍କର କନ୍ୟାମାନେ ନୃତ୍ୟ ପରିବେଷଣ କରିଥିଲେ । ବଡ଼ ରାଓକାକା ଏବଂ ତାଙ୍କର ଜୋଇଁ ପ୍ରଦୋଷ ମିଶ୍ର ମଧ୍ୟ ନିମନ୍ତ୍ରିତ ହୋଇ ଆସିଥିଲେ । ବଡ଼ ରାଓକକାଙ୍କର ଦେହ ଭଲ ନ ଥିବାରୁ ସେ ଶୀଘ୍ର ଘରକୁ ଫେରିଯାଇଥିଲେ କିନ୍ତୁ ମୁଁ ସେ ସମୟରେ ତାଙ୍କ ଅସୁସ୍ଥତାର ଭୟାବହତା ସଂପର୍କରେ ସଚେତନ ନ ଥିଲି । ଏଭଳିକି ତାଙ୍କର କୌଣସି ଜଣେ ହେଲେ ସାଙ୍ଗ ସେକଥା ଜାଣି ନ ଥିଲେ । ବଡ଼ ଦୁଃଖର କଥା ଧୀରେ ଧୀରେ ତାଙ୍କର ସ୍ୱାସ୍ଥ୍ୟ ଖରାପ ହେଲା । ମୁଁ ତାଙ୍କୁ ଦେଖିବାକୁ ସୌଭାଗ୍ୟଙ୍କ ସହିତ କଳିଙ୍ଗ ହସପିଟାଲକୁ ଯାଇଥିଲି । ସେଠି ସେ ମୋତେ ଆଦରରେ ମୋର ଭଲମନ୍ଦ ପଚାରିଥିଲେ । କିନ୍ତୁ ଭାଗ୍ୟର ବିଡ଼ମ୍ବନା, ଖୁବ୍ ଅଳ୍ପଦିନପରେ ତାଙ୍କର ସ୍ୱାସ୍ଥ୍ୟର ଆହୁରି ଅବନତି ଘଟିଲା ଏବଂ ସେ ଆମ୍ଭମାନଙ୍କୁ ପଛରେ ରଖି ଚାଲିଗଲେ । ବଡ଼ ରାଓକାକା ଆମ ଶିଳ୍ପୀ ପରିବାରର ଜଣେ ମୁଖିଆ ହୋଇଥିବାରୁ ଏ ସମ୍ବାଦ ମୋତେ ଅତ୍ୟନ୍ତ ଦୁଃଖ ଦେଇଥିଲା । ତାଙ୍କର ବିୟୋଗରେ ମୁଁ ମୋର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।



## ନିତ୍ୟାନନ୍ଦ ମିଶ୍ର

## ବନ୍ଧୁ ଚନ୍ଦର୍ ରାଓ

ଚନ୍ଦର୍ ରାଓଙ୍କ ସହ ଯେଉଁଦିନ ମୋର ପ୍ରଥମ ଦେଖା ହେଲା, ମତେ ଲାଗିଲା ପୃଥିବୀର କୋଟ କୋଟି ମଣିଷଙ୍କ ଭିତରେ ଇଏ କ୍ଷୁଦ୍ର ମଣିଷଟିଏ । ବହୁ କ୍ଷୁଦ୍ର ଜିନିଷ ଭିତରେ ବିରାଟ ଶକ୍ତି ଲୁଚି ରହିଥାଏ । ପରମାଣୁ ପରି କ୍ଷୁଦ୍ର ବସ୍ତୁଟିରେ ମଧ୍ୟ ଅସୀମ ଶକ୍ତି ଲୁଚି ରହିଥିବା ସହଜରେ ବୁଝା ପଡ଼େ ନାହିଁ । ସେମିତି ଚନ୍ଦର୍ ରାଓ । ଦେହରେ ସାଦାସିଧା ପୋଷାକ ଓ ମୁହଁରେ ଚେନାଏ ହସ । ଯେତେବେଳେ ପରିଚୟ ପାଇଲି ବୁଝି ପାରିଲି ନାହିଁ ଏ ବ୍ୟକ୍ତିଙ୍କୁ କଳା କେଉଁ ଦିଗରୁ ସ୍ପର୍ଶ କରିଛି । ପରିଚୟ

ଧିରେ ଧିରେ ବନ୍ଧୁତ୍ୱରେ ପରିଣତ ହେଲା । ତାଙ୍କ ଅଙ୍କା ଚିତ୍ର ଦେଖିଲି । ଚିତ୍ରେ ଚିତ୍ରେ ଓଡ଼ିଶୀର ଛାପ । ଶୈଳୀ ସ୍ୱତିନ୍ତ । ସେଇ ସ୍ୱତନ୍ତ ଶୈଳୀ ପାଇଁ ହିଁ ସେ ମହିମାନ୍ୱିତ ।

ବହୁ ଚିତ୍ର ପ୍ରଦର୍ଶନୀରେ ତାଙ୍କ ସହିତ ଭେଟ ହୋଇଛି । ଅନ୍ୟ ସମୟରେ ମଧ୍ୟ ବହୁବାର ମିଶିଛି । ଚିତ୍ର ବିଷୟରେ କେବେକେବେ ଆଲୋଚନା ବି ହୋଇଛି । କିନ୍ତୁ କଳା ଉପରେ ଗୁଡ଼େ ଭାଷଣବାଜି କରିବାର ତାଙ୍କୁ କେବେ ଦେଖିନି । ସେ କଥାର ମଣିଷ ନ ଥିଲେ । ଥିଲେ କାମର ମଣିଷ । ତାଙ୍କର ବକ୍ତବ୍ୟ ବାକ୍ୟରେ ପ୍ରକାଶ କରିବା ଅପେକ୍ଷା ସେ ଅଧିକ ପସନ୍ଦ କରୁଥିଲେ ଚିତ୍ରରେ ପ୍ରକାଶ କରିବାକୁ । ଏଇଥିପାଇଁ ତାଙ୍କ ଚେହେରା ହୁଏତ ଜନଗହଳିରେ ବାରି ହୋଇପଡୁ ନ ଥିଲା, କିନ୍ତୁ ତାଙ୍କ ଚିତ୍ର ବାରିହୋଇ ପଡୁଥିଲା ଚିତ୍ରମାନଙ୍କର ବିରାଟ ସମୁଦ୍ରରେ ।

ସାନଭଉଣୀ ବିଭାଘର ବେଳେ ଇଚ୍ଛା ହେଲା ସୁନ୍ଦରିଆ ନିମନ୍ତ୍ରଣ ପତ୍ରଟିଏ ଛାପିବାକୁ, ଯେଉଁଥିରେ ଟିକେ ଟିକେ ଓଡ଼ିଆ ବାସ୍ନା ବାହାରୁଥିବ । ପହଞ୍ଚିଲି ବଡ଼ଗଡ଼ ବ୍ରିଟ୍ କଲୋନିରେ । ଚନ୍ଦର୍ ରାଓ ସେତେବେଳେ ଖୁବ୍ ବ୍ୟସ୍ତ । କୌଣସି ଏକ ପ୍ରଦର୍ଶନୀ ପାଇଁ ଚାଲିଥାଏ ଅବିରତ ଚିତ୍ର ଅଙ୍କା । ମୋ ମୁହଁ ଶୁଖିଗଲା କିନ୍ତୁ ମୋର ସମସ୍ତ ଆଶଙ୍କା ସେ ଦୂର କରିଦେଲେ ଗୋଟିଏ ମୁହୂର୍ତ୍ତରେ । କହିଲେ -"ଚିତ୍ର ତ ଜୀବନସାରା ଅଙ୍କା ଚାଲିଥିବ । ବସନ୍ତୁ । ଆପଣଙ୍କ ପସନ୍ଦ ହେଲା ଭଳି ଚିତ୍ରଟିଏ ଆଙ୍କି ଦେଉଛି ।" ତା'ପରେ ଆରମ୍ଭ ହେଲା ଚିତ୍ର ଅଙ୍କା ପର୍ବ । ରଫ୍ ସ୍କେଚ୍ ଟାଣି ସଙ୍ଗେ ସଙ୍ଗେ ମତେ ଦେଖାଇ ଆପ୍ରୁଭ୍ କରି ନେଲେ । ସଂଧ୍ୟାବେଳେ ତାଙ୍କ ଘରେ ପହଞ୍ଚି ଦେଖେ ତ ସୁନ୍ଦର ଚିତ୍ରଟିଏ ଅଙ୍କା ହୋଇ ଥୁଆହୋଇଛି । ଠିକ୍ ଯେମିତି ମୁଁ ଚାହିଁଥିଲି । କୃତ୍ୟ କୃତ୍ୟ ହୋଇ ଫେରିଲି । ନିମନ୍ତ୍ରଣ ଛପା ହେଲା । ତାର ଦୁଇ ପଟେ ଦୁଇଟା କୁନ୍ଦକରା କାଠ ବାଡ଼ି ଲଗା ହେଲା । ଉପରପଟ ବାଡ଼ିରେ ଲାଲ୍ ଓ ସୁନେଲି ରଂଗର ଫିତା ବନ୍ଧା ହେଲା । ଏ ଭିତରେ ଦଶ ବର୍ଷ ବିତିଗଲାଣି । କିଛିଦିନ ତଳେ ଜଣେ ବନ୍ଧୁଙ୍କ ଠାରୁ ଶୁଣିଲି, ଏବେ ବି ତାଙ୍କ ଘରେ ସେଇ ନିମନ୍ତ୍ରଣ ପତ୍ରଟି କାନ୍ଥରେ କ୍ୟାଲେଣ୍ଡର ପରି ଟଙ୍ଗା ହୋଇଛି । ମୋର ବିସ୍ମିତ ନୟନକୁ ଚାହିଁ ସେ କହିଲେ, "ଏଡ଼େ ସୁନ୍ଦର ଚିତ୍ରଟିକୁ ଫୋପାଡ଼ି ଦେବାକୁ ମନ ହେଲାନି ।"

ଚିତ୍ର ଅଙ୍କା ଓଡ଼ିଶାରେ ଚାଲିଛି ଓ ଚାଲୁଥିବ । କିନ୍ତୁ ଚନ୍ଦର୍ ରାଓଙ୍କ ଚିତ୍ରମାନେ ଆଉ ଆଙ୍କି ହେବେନି । ଓଡ଼ିଶୀ ବାସ୍ନାରେ ବାରି ହୋଇ ଯାଉଥିବା ଚିତ୍ରମାନଙ୍କରେ ଶୂନ୍ୟସ୍ଥାନ କେବେ ପୂରିବ ତା' କିଏ କହିବ ?

ପ୍ରଭୁ ଚନ୍ଦ୍ରଶେଖରଙ୍କ ଆତ୍ମାକୁ ସଦ୍‌ଗତି ପ୍ରଦାନକରନ୍ତୁ ଓ ତାଙ୍କ ପରିବାରର ସଦସ୍ୟମାନଙ୍କୁ ଏହି ଅକାଳକ୍ଲେଶ ସହିବା ପାଇଁ ଶକ୍ତି ଦିଅନ୍ତୁ , ଏତକି କାମନା ।

■

# ଜଗଦୀଶ ଚନ୍ଦ୍ର କାନୁନ୍‌ଗୋ
## ସ୍ମୃତିରେଖା

ସାଂପ୍ରତିକ ଚାରୁକଳା କ୍ଷେତ୍ରରେ ଭାରତର ଯେଉଁ କେତେକ ପ୍ରଖ୍ୟାତ ଶିଳ୍ପୀ ଦୃଷ୍ଟିଗୋଚରକୁ ଆସନ୍ତି ସେମାନଙ୍କ ମଧ୍ୟରେ ଓଡ଼ିଶାର ଶିଳ୍ପୀ ଚନ୍ଦ୍ରଶେଖର ରାଓ ଅନ୍ୟତମ । ଚିତ୍ରରେ ତାଙ୍କର ରେଖା ଯେତିକି ବଳିଷ୍ଠ, ରଙ୍ଗ ବ୍ୟଞ୍ଜନା ସେତିକି ଆନନ୍ଦ ଦାୟକ, ରଚନା ଶୈଳି ମଧ୍ୟ ଅତି ମନୋରମ । ତାଙ୍କର ପ୍ରତ୍ୟେକ କୃତିରେ ଭରି ରହିଛି ଭାରତୀୟତାର ମହକ, ନୂତନତାର ମାଦକତା ଓ ପରମ୍ପରାର ଚମତ୍କାରିତା । ଚାରୁକଳା କ୍ଷେତ୍ରରେ ସ୍ୱକୀୟ ଧାରା ପ୍ରବର୍ତ୍ତନ କରିବାରେ ସିଦ୍ଧହସ୍ତ ଓଡ଼ିଆ ଶିଳ୍ପୀ । ଖାଲି ସେତିକି ନୁହେଁ, କଳା ରସିକ, କଳା ସମୀକ୍ଷକ ଓ ଶିଳ୍ପୀମାନଙ୍କ ସମ୍ମୁଖରେ ସେ ଥିଲେ ଜଣେ ଯାଦୁକର ।

ଓଡ଼ିଶାର କାରୁକଳା କ୍ଷେତ୍ରକୁ ତାଙ୍କର ଅବଦାନ ମଧ୍ୟ ଅଶେଷ । ଜଣେ ସୁଦକ୍ଷ ନମୁନାକାରି (Designer) ଭାବେ ସେ ଯେଉଁ ସୃଜନଶୀଳ ନମୁନା ସବୁ ପ୍ରସ୍ତୁତ କରିଛନ୍ତି ସେଗୁଡ଼ିକ ହେଉଛି ରସବନ୍ତ, ଓଡ଼ିଶା ଲୋକ କଳା ଓ ପାରମ୍ପରିକ କଳାର ଗୋଟିଏ ଗୋଟିଏ ନିଦର୍ଶନ । ତାହାରି ଉପରେ ଆଜି ଓଡ଼ିଶାର କାରୁଶିଳ୍ପ ଋଦ୍ଧିମନ୍ତ ।

ଜଣେ କଳା ଶିକ୍ଷକ ଭାବେ ନିଜର କର୍ମମୟ ଜୀବନ ଆରମ୍ଭ କରି ଜୀବନର ଶେଷ ଭାଗ ପର୍ଯ୍ୟନ୍ତ ଯେଉଁ ନବୀନ ଓ ତରୁଣ ଶିଳ୍ପୀମାନଙ୍କୁ ତାଲିମ ଦେଇ ଚାରୁକଳା କ୍ଷେତ୍ରରେ ଅବତିର୍ଣ୍ଣ କରାଇଛନ୍ତି ସେଥିପାଇଁ ସେ ଅଭିନନ୍ଦନୀୟ ।

ସଂଘର୍ଷମୟ ଜୀବନ ମଧ୍ୟରେ ନିଜର ନିଷ୍ଠା ଓ କର୍ମ କୁଶଳତା ପାଇଁ ବହୁ ପୁରସ୍କାର ପାଇଛନ୍ତି ଓ ସମ୍ମାନିତ ହୋଇଛନ୍ତି । ଉଚ୍ଚାଙ୍ଗ ଧାରା ସୃଷ୍ଟିକରି କଳା କ୍ଷେତ୍ରରେ ଯେଉଁ ମହନୀୟତା ହାସଲ କରିଛନ୍ତି ସେଥିପାଇଁ ଓଡ଼ିଶର ଗୌରବାନ୍ୱିତ ।

ସେହି ସୁଯୋଗ୍ୟ ମହାନ୍ ଶିଳ୍ପୀଙ୍କ ସଙ୍ଗରେ ମିଶିବାର ସୁଯୋଗ ମିଳିଥିଲା ୧୯୫୯ ମସିହାରେ ଖଲିକୋଟସ୍ଥିତ ସରକାରୀ ଚାରୁକଳା ବିଦ୍ୟାଳୟରେ । ସେ ଥିଲେ ମୋ ଉପର ଶ୍ରେଣୀର ଛାତ୍ର । ଚନ୍ଦ୍ରବାବୁଙ୍କ ହସ ହସ କଥା, ମାର୍ଜିତ ରୁଚି, ସୌଜନ୍ୟପୂର୍ଣ୍ଣ ବ୍ୟବହାର, ଆତ୍ମନିର୍ଭରଶୀଳତା ଏବଂ ସତ୍ୟନିଷ୍ଠ ଆମ୍ଭମାନଙ୍କ ଛାତ୍ର ଜୀବନରେ ବହୁଭାବେ ପ୍ରଭାବିତ କରିଥିଲା ।

ସରକାରୀ ଚାକିରୀରେ ଜଣେ Designer ଭାବେ ସେ ନିଷ୍ଠାର ସହିତ କାର୍ଯ୍ୟକରି ଓ ସ୍ୱକୀୟ ଅଧ୍ୟବସାୟରେ ଚିତ୍ର କରି ଏକ ସ୍ୱତନ୍ତ୍ର ଧାରା ସୃଷ୍ଟି କରି

ସର୍ବଭାରତୀୟ ସ୍ତରରେ ନିଜକୁ ଜଣେ ଦକ୍ଷ ଶିଳ୍ପୀ ଭାବେ ଉପସ୍ଥାପନ କରିପାରିଥିଲେ। ସେଥିରେ ସେ ଆତ୍ମ ସନ୍ତୋଷ ନ ପାଇ ଓଡ଼ିଶାର ଅଗଣିତ କାରୁଶିଳ୍ପୀଙ୍କ ବିକାଶ ପାଇଁ ବିଭିନ୍ନ ଅଞ୍ଚଳ ଭ୍ରମଣ କରି ଲୋକ କଳା ଓ ପାରମ୍ପରିକ କଳାକୁ ବିଶେଷ ଭାବେ ଅନୁଧ୍ୟାନ କରି ସୃଜନାତ୍ମକ ନମୁନା ପ୍ରସ୍ତୁତ କରି ସେଗୁଡ଼ିକର ଯଥାବିଧି ପ୍ରୟୋଗ ହୋଇ ଶିଳ୍ପୀମାନଙ୍କ ଦ୍ୱାରା ଉନ୍ନତମାନର କୃତି ହେବ ସକଳ ପ୍ରକାର ଉଦ୍ୟମ କରିଥିଲେ ।

ଛାତ୍ରାବସ୍ଥାରୁ ଏକାଡେମୀର ରାଜ୍ୟସ୍ତରୀୟ ପ୍ରଦର୍ଶନୀରେ ପୁରସ୍କୃତ ହୋଇଥିବାରୁ ଏହି ଅନୁଷ୍ଠାନ ପ୍ରତି ତାଙ୍କର ଗୋଟିଏ ସହୃଦୟତା ଥିଲା । ଏକାଡେମୀର ମୋର କାର୍ଯ୍ୟକାଳ ମଧ୍ୟରେ ସେ ବହୁବାର ପୁରସ୍କୃତ ହୋଇଥିଲେ ଓ ପ୍ରତ୍ୟେକ ପ୍ରଦର୍ଶନୀରେ ସେ ଅଂଶଗ୍ରହଣ କରୁଥିଲେ । ବିଭିନ୍ନ ପ୍ରଦର୍ଶନୀର ବିଚାରକ ଆସନ ମଧ୍ୟ ଅଳଙ୍କୃତ କରିଥିଲେ । ବହୁ ଶିଳ୍ପୀ ଶିବିର ଓ କାର୍ଯ୍ୟକ୍ରମରେ ଯୋଗ ଦେଇଥିଲେ । ତାଙ୍କର କୃତି ରାଜ୍ୟ ସଂଗ୍ରହାଳୟସ୍ଥିତ ଏକାଡେମୀ ଚିତ୍ରାଗାରରେ ମଧ୍ୟ ପ୍ରଦର୍ଶିତ ହୋଇରହିଛି । ମୋ ଜାଣିବାରେ ସେ ଦେଇଥିବା ଚିତ୍ରଗୁଡ଼ିକ ମଧ୍ୟରୁ କେତେକ ଏକାଡ଼େମୀ ଶିଳ୍ପୀ କଲ୍ୟାଣ ପାଣ୍ଠି ପାଇଁ Greeing Card ଆକାରରେ ମୁଦ୍ରିତ ହୋଇ ସର୍ବାଧିକ ଅର୍ଥ ଏହି କଲ୍ୟାଣ ପାଣ୍ଠିରେ ଗଚ୍ଛିତ ହୋଇଥିଲା । ଏହି ମହତ କାର୍ଯ୍ୟ ପାଇଁ ଏକାଡେମୀ ପକ୍ଷରୁ ତାଙ୍କୁ ଅନୁରୋଧ କରିବା ମାତ୍ରେ ସେ ସମ୍ମତି ପ୍ରଦାନ କରିଥିଲେ । ଏକାଡେମୀ କାର୍ଯ୍ୟରେ ସଦାସର୍ବଦା ସହଯୋଗ କରୁଥିଲେ, ଯଦିଓ ସେ ଏକାଡେମୀର କୌଣସି ପଦ ପଦବୀରେ ଆସୀନ ହୋଇନଥିଲେ ।

କେନ୍ଦ୍ର ଲଳିତ କଳା ଏକାଡେମୀ ସାଧାରଣ ପରିଷଦରେ ମୁଁ ଜଣେ ସଭ୍ୟ ଥିବା ସମୟରେ ଚନ୍ଦ୍ରବାବୁ Artist Constituency ରୁ ନିର୍ବାଚିତ ହୋଇ ସଭ୍ୟ ହୋଇଥିଲେ । ଡକ୍ଟର ଦିନନାଥ ପାଠୀ କେନ୍ଦ୍ର ସରକାରଙ୍କ ମନୋନିତ ସଭ୍ୟ ଥିଲେ । ଚନ୍ଦ୍ରବାବୁଙ୍କ ସହିତ ଆମ୍ଭମାନଙ୍କର ସୁସଂପର୍କ ଥିବାରୁ କେନ୍ଦ୍ର ଏକାଡେମୀ ସ୍ତରରେ ଓଡ଼ିଶାରେ ବିଭିନ୍ନ କାର୍ଯ୍ୟକ୍ରମ କରାଇବାରେ ସଫଳତା ଲାଭ କରିଥିଲା । ଭୁବନେଶ୍ୱର ରାଷ୍ଟ୍ରୀୟ ଲଳିତ କଳା ଏକାଡେମୀ ପ୍ରତିଷ୍ଠା ପାଇଁ ମୋର ଯେଉଁ ବ୍ୟକ୍ତିଗତ ଉଦ୍ୟମ ସେ ଉଣା ଅଧିକେ ସବିଶେଷ ଅବଗତ ଥିଲେ । ବର୍ତ୍ତମାନର ଯେଉଁ ଶ୍ରୀହୀନ ଅବସ୍ଥାରେ ଅନୁଷ୍ଠାନଟି ଅଛି ଗତ କିଛିଦିନ ତଳେ ସେଥିପାଇଁ ମୋ ସହିତ ଆଲୋଚନା ସମୟରେ ବହୁ ଦୁଃଖଦ ଓ ଭାବପ୍ରବଣ ହୋଇ ବହୁ କଥା କହୁଥିଲେ । ଏଥିପାଇଁ ରାଜ୍ୟର ଶିଳ୍ପୀମାନଙ୍କ ପକ୍ଷରୁ ଯଥାବିଧି କାର୍ଯ୍ୟାନୁଷ୍ଠାନ କଲେ କେତେକ ପରିମାଣରେ ଅନୁଷ୍ଠାନର ଉନ୍ନତି ହେବ ବୋଲି ପ୍ରକାଶ କରିଥିଲେ । ଚନ୍ଦ୍ରବାବୁ ଆଜି ନାହାନ୍ତି, କିନ୍ତୁ ଓଡ଼ିଶାର ଶିଳ୍ପୀବର୍ଗ ଏ ବିଷୟରେ ସଚେତନ ହେଲେ କିଛି ସୁଫଳ ମିଳିବ ବୋଲି ଆଶା ।

AIFACS ରାଜ୍ୟସ୍ତରୀୟ ପ୍ରଦର୍ଶନୀରେ ଜଣେ ବିଚାରକ ହେବାକୁ । ସମ୍ମତି ପ୍ରଦାନ କରି ଲଳିତକଳା ଏକାଡ଼େମୀକୁ ଉତ୍ତରଟି ପଠାଇଦେଲି । କଳାକୃତି ମନୋନୟନ କରିବା ପାଇଁ ଏକାଡେମୀକୁ ଯିବା ପୂର୍ବରୁ ଚନ୍ଦ୍ରବାବୁଙ୍କ ଘରକୁ ଯାଇଥିଲି । ସେ ମଧ୍ୟ ଏହି ବିଚାରକ ମଣ୍ଡଳୀର ଅନ୍ୟତମ ସଭ୍ୟ ଥିଲେ । ଚନ୍ଦ୍ରବାବୁଙ୍କ ଶରୀରର ଏ ପ୍ରକାର ଅଧୋଗତି ଦେଖି ବିସ୍ମିତ ହେଇଯାଇଥିଲି । ସେ ଯେ ଏକାଡେମୀକୁ ଯିବେ ବିଶ୍ୱାସ ହେଲାନାହିଁ । ଏକାଡେମୀର ଏହି କାର୍ଯ୍ୟକ୍ରମରେ ସେ ଯୋଗଦେବାକୁ ସଂଗେ ସଂଗେ ବାହାରିଲେ । କହିଚାଲିଲେ ଭୁବନେଶ୍ୱରରେ ସବୁ ପ୍ରକାର ପରୀକ୍ଷା ନିରିକ୍ଷା ଡାକ୍ତରମାନେ କଳିଙ୍ଗ ହସ୍‌ପିଟାଲରେ କଲେଣି, ରୋଗ ବାହାର କରିପାରୁ ନାହାନ୍ତି । ଯଦି ଆଉ କିଛି କଟକରେ ନହୋଇ ପାରିବ, ଦିଲ୍ଲୀ ଚାଲିଯିବି ଚିକିତ୍ସା ପାଇଁ । ପରବର୍ତ୍ତି ସମୟରେ ତାହାହିଁ ହେଲା । ଏକାଡେମୀର ଏହି ଚିତ୍ର ମନୋନୟନ ବୈଠକଟି ଯେଉଁଥିରେ ବି ଚନ୍ଦ୍ରବାବୁଙ୍କ ଶେଷ ବୈଠକ ତାହା ସବୁଦିନ ମୋ ମନରେ ଲିପିବଦ୍ଧ ହୋଇ ରହିବ । ଏହାଛଡ଼ା ଏକାଡେମୀ କାଗଜ ପୃଷ୍ଠାରେ ତାଙ୍କର ଶେଷ ଦସ୍ତଖତ ତାହା ମଧ୍ୟ ନମୁନା ସ୍ୱରୂକ ରହିବା କିଛିଦିନ ପରେ ଡକ୍ଟର ପାଠୀ ରାତିରେ ଫୋନ୍ ଯୋଗେ ଜଣାଇଲେ ଯେ ଚନ୍ଦ୍ରବାବୁ ଦୁଇ ଦିନ ହେବ କଳିଙ୍ଗ ହସ୍‌ପିଟାଲ୍‌ରେ ଅଛନ୍ତି । ଅବସ୍ଥା ଭଲ ନୁହେଁ । ତା'ପରଦିନ ହସ୍‌ପିଟାଲ ଗଲି । କ୍ୟାବିନ୍‌ରେ ତାଙ୍କର ଯେଉଁ ଯନ୍ତ୍ରଣା ତାହା ଅବର୍ଣ୍ଣନୀ । କଥା କହିବାର ଶକ୍ତି ନାହିଁ, ମନରେ ଥିବା ଅନେକ ଆଶା ସେ ପ୍ରକାଶ କରିବାକୁ ଚାହୁଁଥିଲେ ମଧ୍ୟ ସେ ଭାଷାର ଆଉ ପରିପ୍ରକାଶ ହେଉନାହିଁ । ମୋ ହାତଟିକୁ ଟାଣିନେଇ ବିଛଣା ତଳୁ ନିଜ ଜୀବନୀର ସଂକଳନ ପୁସ୍ତକ ଖଣ୍ଡିକ ଆଣି ବଢେଇ ଦେଇ କହିଲେ, ପୁସ୍ତକଟିର ଉନ୍ମୋଚନ ହେବ । 'ଶତାବ୍ଦୀ' ଅନୁଷ୍ଠାନ ପକ୍ଷରୁ ବଂଧୁ ଅସିତ୍ ମହାନ୍ତି ବହୁ ପରିଶ୍ରମ କରି ଖୁବ୍ ଅଳ୍ପଦିନ ମଧ୍ୟରେ ମୁଦ୍ରଣ କରିଛନ୍ତି । ବଂଧୁମାନଙ୍କୁ କହିବେ ଆସିବାକୁ ।

ଚନ୍ଦ୍ରବାବୁଙ୍କ ପରି ଜଣେ ଆଦର୍ଶ ବଂଧୁ ଆମ୍ଭମାନଙ୍କ ପାଇଁ ଥିଲେ ଆଶା ଓ ଆଶ୍ୱାସନାର ଦୀପଶିଖା । ସେ ପ୍ରଦୀପଟି ଲିଭିଯାଇଛି ସତ ମାତ୍ର ବହୁକାଳ ପର୍ଯ୍ୟନ୍ତ ସେହି ଦୀପଶିଖା ତାଙ୍କର ଅସଂଖ୍ୟ ବଂଧୁ ପରିଜନଙ୍କ ପ୍ରାଣରେ ପ୍ରଜ୍ୱଳିତ ହୋଇ ରହିବ । ତାଙ୍କର ଆଦର୍ଶ ବହୁ ଶିଳ୍ପୀଙ୍କୁ ଉତ୍ସାହ ପ୍ରଦାନ କରିବା ସଂଗେ ସଂଗେ ତାଙ୍କର ସନ୍ତାନ ସନ୍ତତିମାନଙ୍କୁ ଏହି ମହାନ୍ ଶିଳ୍ପୀଙ୍କ ଆଦର୍ଶରେ ଅନୁପ୍ରାଣିତ କରିବ ।



# ଶିବ ପାଣିଗ୍ରାହୀ

## ଶିଳ୍ପୀବଂଧୁ ଚନ୍ଦ୍ର ରାଓ

ଶିଳ୍ପୀବଂଧୁ ଚନ୍ଦ୍ରଶେଖର ରାଓଙ୍କ କଥା ମନେପକାଇଲେ ଅତୀତର ଅନେକ ସ୍ମୃତି ମନକୁ ଆସିଯାଏ । ଖଲିକୋଟ ସରକାରୀ ଚାରୁକଳା ମହାବିଦ୍ୟାଳୟରେ ଆମେ ଦୁହେଁ ୧୯୫୮ରୁ ୧୯୬୨ ଚାରିବର୍ଷ କାଳ ଏକାଠି ରହି ସହପାଠୀ ଭାବେ କେତେ ପ୍ରକାର ଥଟ୍ଟା ତାମ୍‌ସା ଭିତରେ ଦୁଃଖ କଷ୍ଟକୁ ସହି ଅନେକ ପରିଶ୍ରମ କରି କିପରି କଳାବିଦ୍ୟା ଅର୍ଜନ କରିଥିଲୁ ତା କେବଳ ସେହି ଜଗତର ନାଥ ଜଗନ୍ନାଥଙ୍କୁ ହିଁ ଜଣା । ଏହି ପରିଣତ ବୟସରେ ସେ ଓ ମୁଁ ଦୁହେଁ ପାରିବାରିକ ଝଡ଼ ଝଞ୍ଜା ଭିତରେ ରହି ମଧ୍ୟ ପିଲାମାନଙ୍କୁ ମଣିଷ କରି ପାଠ ପଢାଇ ଘର ସଂସାର କରି ପୁଣି ସେମାନଙ୍କ ବିଭାଘର କରି ନିଜେ ଛବି ଆଙ୍କିବା କାମ ଆଜିଯାଏ ବନ୍ଦ କରି ନଥିଲୁ । ଓଡ଼ିଶାରେ ସରକାରୀ ଚାକିରୀ କରି ସୀମିତ ସମ୍ଭଳ ଭିତରେ ବହୁତ କମ୍ ଶିଳ୍ପୀ ଛବି ଆଙ୍କିଥାନ୍ତି । ଛବି ଆଙ୍କିବା ଯେ ଗୋଟିଏ ପ୍ରକାର ନିଶା ତା ଭଣା ଅଧିକେ ସମସ୍ତଙ୍କୁ ଜଣା ।

କିନ୍ତୁ ଚନ୍ଦ୍ରରାଓ ଥିଲେ ଏହର ବ୍ୟତିକ୍ରମ । ତାଙ୍କର ଚିତ୍ରକଳାର ଶୈଳୀ ଖଲ୍ଲିକୋଟରେ ପଢୁଥିବା ବେଳହୁଁ ସ୍ୱାତନ୍ତ୍ର୍ୟତା ବଜାଇ ରଖି ଶିକ୍ଷକମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଭାରତୀୟ ଶୈଳୀରେ ଅଙ୍କିତ ଧୌତଚିତ୍ର, ଟେମ୍ପୋରା, ବିଭିନ୍ନ ପ୍ରକାର ଲୋକକଳା ସଂପର୍କୀୟ ରେଖାଚିତ୍ର ଓ ପରେ ବିଭିନ୍ନ ଗ୍ରାମୀଣ କିମ୍ବା ପୌରାଣିକ କିମ୍ବଦନ୍ତୀ ବିଷୟବସ୍ତୁ ନେଇ ମ୍ୟୁରାଲ୍ ଚିତ୍ର ଆଙ୍କିବାରେ ସେ ସିଦ୍ଧହସ୍ତ ଥିଲେ । ତାଙ୍କ ଧରଣର ଚିତ୍ର ଆଙ୍କିବା ପଦ୍ଧତିକୁ ମୁଁ କେବେ ପ୍ରୟାସ କରିନଥିଲି, ପ୍ରଥମରୁ ହିଁ ଆଧୁନିକ ଚିତ୍ର ଆଙ୍କିବା ପାଇଁ ମୋର ଦୁର୍ବଳତା ଥିଲା । ଯାହା ଆଜିଯାଏ ରହି ଆସିଛି । ବଂଧୁ ଶିଳ୍ପୀ ଡକ୍ଟର ଦିନନାଥ ପାଠୀଙ୍କ ତୈଳଚିତ୍ର ଗ୍ରାମ୍ୟ ଦୃଶ୍ୟ, ଚନ୍ଦ୍ରଶେଖର ରାଓଙ୍କ ଭାରତୀୟ ଚିତ୍ର ବିଷପୀୟୂଷ, ଶିବ ପାଣିଗ୍ରାହୀଙ୍କ ଆଧୁନିକ ତୈଳଚିତ୍ର ତିନି ଭଉଣୀ ପ୍ରଥମ ଓଡ଼ିଶା ଲଳିତ କଳା ଏକାଡ଼େମୀ ପ୍ରଦର୍ଶନୀ, ୧୯୬୧ ମସିହାରେ ପୁରସ୍କୃତ ହୋଇ ଥିବାରୁ ବୋଧହୁଏ ସେଇ ଝୁଙ୍କରେ ଆଜିଯାଏ ଆମେ କେତେ ଜଣ ରଙ୍ଗ ତୂଳୀକୁ ଜୀବନ ଦେଇ ଭଲ ପାଇ ବଂଚି ରହିଥିଲୁ । ମାତ୍ର ଚନ୍ଦ୍ର ରାଓ ଯେ ହଠାତ୍ ଆମେ ଗହଣରୁ ଆକସ୍ମିକ ଭାବେ ଚାଲିଯିବେ ଓ ଚିରଦିନ ପାଇଁ ତାଙ୍କ ରଙ୍ଗ ଓ ତୂଳୀରେ ଆଉ ରଙ୍ଗ ଲାଗିବ ନାହିଁ ଏକଥା ମୁଁ ସେ ଦିନ ହିଁ ତାଙ୍କ ଶବାଧାରରେ ଫୁଲମାଳ ଦେଲା ବେଳକୁ ଜାଣିଥିଲି । ଏହାହିଁ ପୃଥିବୀର ଚିରନ୍ତନ ସତ୍ୟ ।

ବହୁ କଳା ପ୍ରଦର୍ଶନୀ, ଚିତ୍ରକଳା ଶିବିର, ସାଂସ୍କୃତିକ ଅନୁଷ୍ଠାନରେ ସେ ଓ ମୁଁ ଉଭୟେ ଭାଗନେଇଛୁଁ, ଏକତ୍ର ଦିନରାତି କଟାଇଛୁଁ । ବହୁତ ଦୁଃଖସୁଖ ହୋଇଛୁଁ ଏଇ ଓଡ଼ିଶାର ଚିତ୍ରକଳା ଓ ଚିତ୍ରଶିଳ୍ପୀଙ୍କ ସମସ୍ୟା ନେଇ । ସରକାରୀ ଓ ବେସରକାରୀ ସ୍ତରରେ ଶିଳ୍ପୀମାନଙ୍କୁ ଯେତିକି ଆଦର ଅଭ୍ୟର୍ଥନା ବା ଆର୍ଥିକ ସାହାଯ୍ୟ, ସହାନୁଭୂତି ମିଳିବା, କଥା ତାହା ଅନ୍ୟ ପ୍ରଦେଶମାନଙ୍କ ତୁଳନାରେ ମିଳୁ ନଥିବାରୁ, ଏପରିକି ବହୁ ମାନ୍ୟଗଣ୍ୟ ତଥା ଧନୀବ୍ୟକ୍ତିଙ୍କ ଶିଳ୍ପକଳାପ୍ରତି ରୁଚି ନଥିବାରୁ, ଶିଳ୍ପୀମାନଙ୍କର ମଧ୍ୟ କଳା ପ୍ରତି ଆଗ୍ରହ ବିଶେଷ ବଢୁ ନଥିବାରୁ ସାମୟିକ ଭାବେ ଚନ୍ଦ୍ରଶେଖର ରାଓ ଦୁଃଖ ପ୍ରକାଶ କରି ମୋତେ କହୁଥିଲେ । ହସ୍ତଶିଳ୍ପ ତାଲିମ କେନ୍ଦ୍ରରେ ସେ ବରିଷ୍ଠ ଶିଳ୍ପୀ ରୂପେ କାର୍ଯ୍ୟ କରୁଥିବା ସମୟରେ ସହଯୋଗୀ ଟେରାକୋଟା ଓ ଭାସ୍କର୍ଯ୍ୟ ଶିଳ୍ପୀ ଦେବରାଜ ସାହୁଙ୍କ ସହିତ କିଛି ନୂଆ ଆଧୁନିକ ଶୈଳୀରେ ଡ଼ିଜାଇନ୍ ପ୍ରସ୍ତୁତ କରିବା ପାଇଁ ମନୋନିବେଶ କରିଥିଲେ ମଧ୍ୟ ସରକାରୀ ସ୍ତରରେ ଅନେକ ବାଧା ଉପୁଜିଥିଲା । ତେଣୁ ସେ ଦୁଃଖ ପ୍ରକାଶ କରୁଥିଲେ । ଚନ୍ଦ୍ର ରାଓଙ୍କ ଚିତ୍ରକୁ ପରବର୍ତ୍ତୀ ସମୟରେ ଆମ ଦେଶରେ ଓ ଜାତୀୟ ସ୍ତରର କଳା ପ୍ରଦର୍ଶନୀମାନଙ୍କରେ କିଛି ନୂତନତ୍ୱ ଥିବାର କଳା ସମାଲୋଚକ ଓ ପ୍ରଖ୍ୟାତ ଶିଳ୍ପୀମାନେ ସନ୍ଧାନ ପାଇଥିଲେ । ତେଣୁ ସେ ଓଡ଼ିଶା ବାହାରକୁ ଯାଇ ନିୟମିତ ଏକକ ଓ ମିଳିତ ଚିତ୍ରକଳା ପ୍ରଦର୍ଶନୀର ଆୟୋଜନ କରି ଖୁବ୍ ଉଚ୍ଚ ପ୍ରଶଂସିତ ହେଉଥିଲେ ଓ ଛବି ମଧ୍ୟ ବିକ୍ରୀ କରୁଥିଲେ । ତାଙ୍କ ଚିତ୍ରକାଳରେ ଭାରତୀୟ ଶୈଳୀ ଓ ପଦ୍ଧତି ସହିତ ଓଡ଼ିଶୀ ଶୈଳୀ ଓ ଲୋକ କଳାର ସମିଶ୍ରଣ ଥିଲା ।

ଓଡ଼ିଶାରେ ଚନ୍ଦ୍ର ରାଓଙ୍କ ସହ ଆମେ କେତେ ଜଣ ଶିଳ୍ପୀ ତୃତୀୟ ପିଢିର ବୋଲି ଆଜିଯାଏ ଏକତ୍ର ଭାବର ଆଦାନ ପ୍ରଦାନ ଖୁବ୍ ବଢିଯାଇଥିଲା । ଥରକର ଘଟଣା । ଜାତୀୟ ଲଳିତକଳା ଏକାଡ଼େମୀ ନୂଆଦିଲ୍ଲୀ ରବୀନ୍ଦ୍ର ଭବନର ଆର୍ଟ ଗ୍ୟାଲେରୀରେ ୧୯୯୬ ରେ ଆମେ କେତେ ଜଣ ଶିଳ୍ପୀ ଓଡ଼ିଶାରୁ ଯାଇ ମିଳିତ ଭାବେ ଏକ ଚିତ୍ରକଳା, ଭାସ୍କର୍ଯ୍ୟର ପ୍ରଦର୍ଶନୀ କରିଥିଲୁ । ସେମାନଙ୍କ ମଧ୍ୟରେ ଥିଲେ ଡକ୍ଟର ଦିନନାଥ ପାଠୀ, ଚନ୍ଦ୍ରଶେଖର ରାଓ, ଶିବ ପାଣିଗ୍ରାହୀ, କାଶୀନାଥ ଜେନା, ଡ଼ି. ଏନ୍. ରାଓ, ରାମହରି ଜେନା, ଜଗନ୍ନାଥ ପଣ୍ଡା ଓ ପ୍ରତାପ ଜେନା । ପ୍ରଥମ କରି ଓଡ଼ିଶାର ଖ୍ୟାତନାମା କବି ଓ କବୟିତ୍ରୀମାନଙ୍କର କବିତାକୁ ଆଧାର କରି ଶିଳ୍ପୀମାନେ ଛବି ଆଙ୍କି ଯୁଗଳବନ୍ଦୀର ଏପରି ପ୍ରଦର୍ଶନୀ ସୁଚରିତା ମାସିକ ପତ୍ରିକା ସାହାଯ୍ୟରେ ଓଡ଼ିଆ ଶିଳ୍ପୀମାନେ ଆୟୋଜନ କରିଥିବାରୁ ଭାରତର ପ୍ରଖ୍ୟାତ ଶିଳ୍ପୀ ଓ କଳାସମାଲୋଚକମାନେ ଖୁବ୍ ପ୍ରଶଂସା କରିଥିଲେ । ମିଡ଼ିଆମାନେ ବହୁଳ ଭାବେ ପ୍ରଚାର ମଧ୍ୟ କଲେ । ଏଥି ନିମନ୍ତେ ସ୍ୱତନ୍ତ୍ରଭାବେ ଏକ ରଙ୍ଗୀନ୍ କ୍ୟାଟ୍‌ଲଗ୍ ଛପା ଯାଇଥିଲା ।

ସବୁଠାରୁ ଆଶ୍ଚର୍ଯ୍ୟ ଓ ଖୁସି ଲାଗିଥିଲା, ପ୍ରଦର୍ଶନୀର ଶେଷ ଭାଗ ବେଳକୁ । କାରଣ ଅନ୍ୟମାନଙ୍କ ତୁଳନାରେ ଚନ୍ଦ୍ରଶେଖର ରାଓଙ୍କ ପ୍ରାୟ ଆଧିକାଂଶ ଛବି କିଣା ସରିଥିଲା । ସେହି ଖୁସିରେ ସେ ପ୍ରାୟ ତାଙ୍କ ପରିବାର ପାଇଁ ଦିଲ୍ଲୀରୁ ଅଧେ ଜିନିଷ ନୂଆ ଟ୍ରଙ୍କରେ କିଣି ଆଣିଥିଲେ ଓ ଆମ ସମସ୍ତଙ୍କୁ ବହୁତ ମିଠା ଖୁଆଇଥିଲେ । ଭୁବନେଶ୍ୱର ବିଭୂତି କାନୁନ୍‌ଗୋ ଚାରୁକଳା ମହାବିଦ୍ୟାଳୟରେ ଡକ୍ଟର ଦିନନାଥ ପାଠୀ ଅଧ୍ୟକ୍ଷ ଥିଲାବେଳେ ପ୍ରାୟ ଅଧିକାଂଶ ସମୟରେ ବିଭିନ୍ନ ଧରଣର ଚିତ୍ରକଳା ପ୍ରଦର୍ଶନୀ ଓ କଳାର ସାଜସଜା ନେଇ କାର୍ଯ୍ୟ ହେଉଥିଲା । ଏଥି ନିମନ୍ତେ ସାହାଯ୍ୟ ପାଇଁ ଅନ୍ୟ ଶିଳ୍ପୀଙ୍କ ସହ ଚନ୍ଦ୍ରଶେଖର ରାଓଙ୍କୁ ବେଶୀ ଖୋଜା ହେଉଥିଲା । ତାଙ୍କର ଅପୂର୍ବ ଆଳଙ୍କାରିକ ଶୈଳୀରେ ଚିତ୍ରିତ ଛବି ଗୁଡ଼ିକ ବେଶ୍ ହୃଦୟସ୍ପର୍ଶୀ ହେବା ସହ ମନମୁଗ୍ଧକର ହେଉଥିଲା । ତାଙ୍କର ସହନଶୀଳ ଶକ୍ତି ଅସୀମ ଥିଲା କୌଣସି କାମକୁ ମନା କରି ପାରୁ ନ ଥିଲେ ଓ ଯୁବ ଶିଳ୍ପୀମାନଙ୍କୁ ବହୁତ ଭଲ ପାଉଥିଲେ ।

ୱାର୍କିଂ ଆର୍ଟିଷ୍ଟ୍ ଏସୋସିଏସନ୍ ଓଡ଼ିଶାର ଚନ୍ଦ୍ର ରାଓ ଥିଲେ ଚେୟାରମ୍ୟାନ୍। ଓଡ଼ିଶା ଚିତ୍ରକଳା ଓ ଶିଳ୍ପୀଙ୍କ ଜିବନୀ ପୁସ୍ତିକା ପ୍ରକାଶ ନିମନ୍ତେ ସେ ନୂଆ ଦିଗ୍‌ଦର୍ଶନ ଦେଇଥିଲେ ।

ଭୁବନେଶ୍ୱର ବି.କେ. ଚାରୁକଳା ମହାବିଦ୍ୟାଳୟରେ ମୁଁ ଚିତ୍ରକଳା ବିଭାଗରେ ଆଧାପକ ଥିବା ସମୟରେ ତାଙ୍କ ବଡ଼ ଝିଅ ସଙ୍ଗୀତା ଚିତ୍ରକଳା ବିଭାଗର ଛାତ୍ରୀ ଓ ପ୍ରଦୋଷ ମିଶ୍ର କଳା ଇତିହାସର ଛାତ୍ର ଓ ବଡ଼ ପୁଅ ତାରାଶଙ୍କର ଭାସ୍କର୍ଯ୍ୟ ବିଭାଗର ଛାତ୍ରଥିଲେ । ପରବର୍ତ୍ତୀ ସମୟରେ ପ୍ରଦୋଷ ସଙ୍ଗୀତାକୁ ବିଭାହୋଇ ବର୍ତ୍ତମାନ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଅଧାପକ ରୂପେ କାର୍ଯ୍ୟ କରୁଛନ୍ତି । ଗୋଟିଏ ପରିବାରରେ ବହୁତ ଶିଳ୍ପୀଙ୍କ ସମାବେଶ ହୋଇଥିବାରୁ ଏହି ପରିବାର ପ୍ରାୟ ସମସ୍ତଙ୍କୁ ମୁଗଧ୍ କରିଥିଲା । ଶ୍ରୀମତୀ ରାଓଙ୍କ ହସ ହସ ମୁହଁ ଓ ଆଦର ଅଭ୍ୟର୍ଥନା ଭୁଲି ହେବନି । ମୁଁ ମଧ୍ୟ ଅନେକ ଥର ତାଙ୍କ ଘରକୁ ଯାଇ ତାଙ୍କ ହାତରନ୍ଧା ଦକ୍ଷିଣି ଖାଦ୍ୟ ବିଶେଷ କରି ଉପମା, ସମ୍ବର, ଚଟଣୀ ଖାଇ ତୃପ୍ତି ପାଇଛି । ବିଧିର ବିଧାନ ବଡ଼ ବିଚିତ୍ରମୟ । ଏଇ କିଛି ମାସ ପୂର୍ବରୁ କଟକ ସି.ଡ଼ି.ଏ.ରେ ମୋ ବାସସ୍ଥାନରେ ମୋ ପୁଅ ବିଭାଘର ଦିନ ସେ ନ ଆସିପାରିଥିବାରୁ ଠିକ୍ ତା ପରଦିନ ଭୁବନେଶ୍ୱରରୁ ତାଙ୍କ ପରିବାରଙ୍କୁ ଧରି ଏକ ଟେକ୍ସିରେ ଆସି ହଠାତ୍ ହାଜର ହୋଇଗଲେ । ମୋତେ ଆଗ ଦେଖି ସେ କୁଣ୍ଢାଇ ପକାଇଥିଲେ । ଛାତ ଉପରେ, ଠାକୁର ଘରେ କେତେ କେତେ କଥା ଆଲୋଚନା ହୋଇଗଲା । ମାତ୍ର ସବୁ କଥା ଭିତରେ ସାରାଂଶ ଥିଲା, ଓଡ଼ିଶାର ଚିତ୍ରକଳା ଓ ଶିଳ୍ପୀମାନଙ୍କ ସମସ୍ୟା ।



# ବଳଦେବ ମହାରଥୀ

## କିଛି କଥା ଅନେକ ବ୍ୟଥା

''ଆକାଶରେ ଲାଲ୍ ରଙ୍ଗ । କେତେ ଛଟା, କେତେ ରାଗ । ବୁଡ଼ିବା ପୂର୍ବରୁ ଆକାଶର କ୍ୟାନଭାସରେ ଶେଷ ତୂଳୀ ସ୍ପର୍ଶ କି ଆଉ ? କି ଚମତ୍କାର ! ... ଲମ୍ବା ରାସ୍ତାରେ ପୁଣି ବଢ଼ିବାକୁ ପଡ଼ିବ ।''

ଉପସଂହାର ଲେଖିଲା ବେଳେ ସେ କ'ଣ କଦାପି ଭାବିଥିବେ ଯେ ଏମିତି ଚମତ୍କାର ଭାବେ ଚମକେଇ ଦେଇ ଚାଲି ଯିବାକୁ ହେବ ବୋଲି । ନା କଲମ ଧରି ପାରିବେ ନା ତୂଳୀ ! ରାଜ୍ୟରୁ ରାଜ୍ୟକୁ ସହରରୁ ସହରକୁ ଆଉ କ'ଣ ଯାଇହେବ ? ରାସ୍ତା ସରିନି ବୋଲି ଲେଖି ସାରିଲାବେଳକୁ କେମିତି ସବୁ ଥମ୍ ହେଇଗଲା !

ଗାଈଆଳ ପିଲାଟି କେମିତି ଠିଆ ହେବ କାନ୍‌ଭାସ୍‌ରେ ବଂଶୀ ବଜେଇବାକୁ, କେମିତି ଆଉ ଶିଙ୍ଗାର ରଚିବ କାଳୀବୋହୂ ବିଥିକୁଂଜରେ ? ବହଳ ଅଂଧାର ଖୁନ୍ଦି ହୋଇ ଖୁମାଣ କଲାଭଳି ଦିଶିଯାଉଛି ତାଙ୍କ ଚିତ୍ରିତ ଆକାଶ ଓ ତାରାଟିଏ ପରି ନିହାତି ଏକଲା ମଣିଷଟେ,ହାତ ପଛକୁ କରି ଠିଆ ହୋଇଛି ଖାଲି ଆଲୋକ ଚିତ୍ରର ଫ୍ରେମରେ ।

ସତକଥା କହିବାର ସବୁଠୁ ବଡ଼ ଲାଭ ହେଲା କାହାକୁ କ'ଣ କହିଚ ମନେରଖିବାକୁ ହୁଏ ନାହିଁ । କିନ୍ତୁ ମିଛ କଥା ପାଇଁ ବରାବର ହେଜ ରଖିବାକୁ ପଡ଼େ ନଚେତ୍ ନିଜ ପାଖରେ ନିଜେ ନ୍ୟୁନ ହେଇଯିବାକୁ ପଡ଼ିଥାଏ ।

ଆମେ ସବୁବେଳେ କଥା ହେଲାବେଳେ ଭଲଲାଗେ । କଥାରେ କଥାରେ, ସବୁ କଥାରେ ମତେ ଉପରେ ରଖିଥାନ୍ତି । କେତେ ଭଲକାମ କରୁଛ, କେମିତି ଚଟ୍‌କରି ବୁଲିଯାଇଛି ତୁମ ତୂଳୀ, ପୃଷ୍ଠଭୂମି ତଥା କଥାବସ୍ତୁ ଏତେ ଜଲଦି ଭାବିପାରୁଛ ଇତ୍ୟାଦି ଇତ୍ୟାଦି-ମୋର ଜଣେ ବିଶୁଦ୍ଧ ଏବଂ ନିଛକ ପ୍ରଶଂସକ ଥିଲେ ସେ ଥିଲେ ଦିବଂଗତ, ଶିଳ୍ପୀ ଚନ୍ଦ୍ରଶେଖର ରାଓ ।

ସାଙ୍ଗହୋଇ ଚାଲିଲା ବେଳେ, କିଏ କାହାର ସ୍ଥିତି ବାବଦରେ ସନ୍ଧିହାନ ନ ଥାନ୍ତି, ମାତ୍ର ସେଥିରୁ ହଠାତ୍ ଜଣେ ଗାଏବ ହେଇଗଲେ, ନିଜ ନିଜର, ଅବସ୍ଥିତିକୁ ଅନୁଭବ କରିହୁଏ, ତାହା ରୋମାଂଚ କର ଲାଗିଲେ କି ହଠାତ କ୍ଳାନ୍ତିବୋଧ ମାଡ଼ିବସେ ମନକୁ,ଚହଲିଯାଏ ଏକାଗ୍ରତା, ଉତକଣ୍ଠାହୀନ ହେଇଯାଏ ଯାତ୍ରା, ପ୍ରଥମେ ତାଙ୍କ ସଙ୍ଗେ କାମ କରିବାର ସୁଯୋଗ ପାଇ କଲିକତା ଯାଇଥିଲା ନାଲକୋର ଏକ କ୍ୟାଲେଣ୍ଡର ପାଇଁ ଚିତ୍ର କରାଯାଇଥାଏ । ପାଠୀବାବୁ, ରାଓବାବୁ , ସତ୍ୟବ୍ରତ, ମୁଁ ଏବଂ ସର୍ବୋପରି, ଚନ୍ଦ୍ରଶେଖର ରାଓ ପ୍ରଭୃତି ସେ ଚିତ୍ର ଆଙ୍କି ଥିଲେ ପ୍ରେସ୍‌କୁ ଯିବା ପୂର୍ବରୁ ଆନୁଷଙ୍ଗିକ,

ଅନ୍ତିମ ପର୍ଯ୍ୟାୟର କାମ ପାଇଁ କେବଳ ଶ୍ରୀ ରାଓ ଓ ମୁଁ କିନ୍ତୁ କଲିକତା ଗଲୁ । ତାଙ୍କ ସଙ୍ଗେ କାମ କରିବାର ପ୍ରଥମ ଅନ୍ତରଙ୍ଗ ଅନୁଭବ । ତା' ପରଠୁ ଶେଷ ପର୍ଯ୍ୟନ୍ତ ମୋ ଆଗରେ ସେ ଚାଲିଥିଲେ, ଆମେ ଚାଲିଥିଲୁ । ଦେଖାହେଲେ ଆନ୍ତରିକତାର ଖୋଲା ହସରେ ଆପ୍ୟାୟିତ କରନ୍ତି ମତେ ବାରମ୍ବାର ଫେଷ୍ଟିଭାଲ ଅଫ୍ ଇଣ୍ଡିଆ, ସ୍ୱିଡ଼େନ୍ ପାଇଁ ମ୍ୟୁରାଲ ଚିତ୍ର ଠାରୁ ଆରମ୍ଭ କରି ରାଜ୍ୟ ସଚିବାଳୟ ପାଇଁ ଚିତ୍ର ଓ ରାଜ୍ୟ ସଂଗ୍ରହାଳୟର ସୁବର୍ଣ୍ଣ ଜୟନ୍ତୀ ପାଳନ ଅବସରରେ ଚିତ୍ର ଓ ସାଜସଜ୍ଜା ପାଇଁ ଆମେ ଏକାଠି କାମ କରିଛୁ, ନିର୍ଦ୍ଦେଶକ ତଥା ଆୟୋଜକ ହେଲେ ପାଠୀବାବୁ । ଆମ ଟିମ୍‌କୁ କାମ ଦେଇ ଦେଲେ ସେ ନିଶ୍ଚିନ୍ତ, ଅନ୍ୟାନ୍ୟ ରାଜକୀୟ ଦପ୍ତରୀ କାର୍ଯ୍ୟରେ ବ୍ୟସ୍ତ ରହନ୍ତି । ସେତେବେଳକୁ ବିକେ ଚାରୁ ଓକାରୁ କଳା ମହାବିଦ୍ୟାଳୟରେ ସୂଚନା ଓ ଲୋକ ସଂପର୍କ ବିଭାଗରୁ ଆସି ମୁଁ ଯୋଗ ଦେଇ ସାରିଥାଏ ଚନ୍ଦ୍ରଶେଖର ରାଓ. ଡ଼ିଏନ୍. ରାଓ ଶିବ ପାଣିଗ୍ରାହୀ, ଦେବରାଜ ସାହୁ ଓ ଅନ୍ୟମାନେ ଥାଆନ୍ତି ଆମ ଗ୍ରୁପରେ । ମୁଁ ଥିଲି ସବୁଠୁ କନିଷ୍ଠ ।

ପରିବାର ପାଇଁ କାମ, ସରକାରୀ ଦପ୍ତରରେ ବିରକ୍ତିକର ଦାୟିତ୍ୱବୋଧ, ସଭାସମିତି କର୍ମଶାଳା ପ୍ରଦର୍ଶନୀ, ଶିଳ୍ପୀ ଶିବିର ଓ ଅନ୍ୟାନ୍ୟ ଅନେକ କାମରେ ବ୍ୟସ୍ତ ବିବ୍ରତ ହେଲେ ମଧ, ଛବି ନ କଲେ ତାଙ୍କୁ ଖୁଜୁବୁଜୁ ଲାଗେ ବୋଲି ତାଙ୍କର ସ୍ୱୀକାରୋକ୍ତିକୁ ମୁଁ ଅତି ନିକଟରୁ ହୃଦୟଙ୍ଗମ କରିଛି ।

ଆତ୍ମଚରିତ 'ଚନ୍ଦ୍ରାୟନ' ପଢ଼ିଲାପରେ ତାଙ୍କୁ ଆହୁରି ନିବିଡ଼ ଭାବରେ ପାଇଲାବେଳକୁ ସେ ଏକବାରେ ଚୁପ ହୋଇଗଲେ ଚିରଦିନ ପାଇଁ ।

ଝୁଣା ଲାଖ ଜଉ ଶାଳା ବାସ୍ନାର ପିଲାଦିନ, ଶାଣ ପଥରର ପଥୁରୀ, ସିଂହ, ପାର୍ଶ୍ୱଦେବତା ଗଢ଼ଣ ବେଳେ ହାତୁଡ଼ିର ଠକ୍‌ଠକ୍ ଶବ୍ଦ, କଂସା ପିତଳ ବାସନର ଘର ଘର ଶବ୍ଦରେ ପୁଲକିତ ମନର ମଣିଷ ହଠାତ୍ ନିଶ୍ଚୁପ, ନିଥର ହେଇଗଲା ଯେମିତି ।

ଟିକେ ଅମ୍ଳଜାନ ପାଇଁ ବିକଳ ହୋଇ କଳିଙ୍ଗ ହସ୍ପିଟାଲରେ କହିଥିଲେ 'ମହାରଥା ମୁଁ ଛବିଆଙ୍କିବି ମତେ କାଗଜ ଦିଅ, ଅନେକ କାମ ଅଛି ମୁଁ ବଂଚିବାକୁ ଚାହୁଁଛି' ତାଙ୍କ ଅନୁଭୂତିରେ ନିଜ ଅନୁଭୁତିକୁ ମିଶେଇ 'ଚନ୍ଦ୍ରାୟନ' ପଢ଼ିଲାପରେ ଅଭିଭୂତ ହେଲି ଏବଂ ତାଙ୍କର ପରିଚୟ ଏବଂ ମୋ ସହ ଅନ୍ତରଙ୍ଗତାର ବିସ୍ତାରିତ ପଟ୍ଟଚିତ୍ର ଆଗରେ , ପ୍ରାକ୍‌କଥନରେ ତାଙ୍କ ଲିଖିତ 'ମୋର ସେମିତି ଗୋଟେ ବିରାଟ ପରିଚୟ ନାହିଁ ' ବୋଲି ଉକ୍ତିକୁ ବାରମ୍ବାର ଖଣ୍ଡନ କରିବାକୁ ପ୍ରତିଜ୍ଞା କଲି । ଅଗ୍ରଜ ପ୍ରତିମ ଚନ୍ଦ୍ର ରାଓ ଆଉ ନାହାନ୍ତି । ବିଶ୍ୱାସ କରିହେଉନି ।



## ପ୍ରବୀର କୁମାର ଦଳାଇ

# ଗାଧୁଆ ତୁଠ, ନୀଳିଆ ଭଗବାନ ଓ ରାଜାଝିଅ ବୃତ୍ତାନ୍ତ

-ଏକ-

କିଏ ସେ ବଇଁଶୀ ଫୁଙ୍କେ !! ରୋଜ୍ ରୋଜ ଏଇ ବେଳ । ଫୁଲ ଫୁଟି ମହକିବାର ବେଳ ! ରଜାଝିଅ ଗାଧୋଇ ଯିବା ବେଳ । ଗାଧୁଆ ତୁଠରେ ଗାଢ ନୀଳ ପାଣି । ଗହୀର ପାଣି । ଢେଉ ଢେଉକା ପାଣି । ପାଣି ଭିତରେ କହୁକ ମାଛଙ୍କ ଲୁଚକାଳି । ପାଣିର ନୀଳିଆ ପିଠିରେ ନାଲି ନାଲି ଫୁଲ ଫୁଟେ । ପଦ୍ମ ଫୁଟେ - ଅଜସ୍ର ଫୁଟେ । ପୋଖରୀ ହୁଡାରେ ଶାଗୁଆ ପତ୍ର ଗହଳରେ ଚମ୍ପା ଓ କଦମ୍ବ ଫୁଟି ମହକେ । ନିତି ଗୋଧୂଳି ବେଳାରେ କଦମ୍ବ ବଣର ପତ୍ର ଉହାଡରେ କିଏ ଜଣେ ବଇଁଶୀ ପୁଙ୍କେ । ବିରହର ବଂଶୀ । ରହି ରହି ଫୁଙ୍କେ ତୁଠ ପଥରରେ ମାଇପିମାନେ ପାଦ ମାଜୁଥିବା ବେଳେ, ବିବସନା ହେଉଥିବା ବେଳେ । କିଏ ସେ ବେସରମ୍ ଏଇ ବେଳେ ବଂଶୀ ବଜାଏ ? ଛାତିତଳେ, ଆହୁରି ତଳେ, ଗହୀର ପାଣିର ଅପହଞ୍ଚ ଦୂରତ୍ୱରେ ପାଖୁଡାର ମିଠାମିଠା ରଙ୍ଗରେ ନିଆଁ ଲାଗିଯାଏ । ଅଲାଜୁକ ନିଆଁ ଜଳୁଥାଏ । ବଇଁଶୀର ସ୍ୱର ମିଠା ମିଠା ଯନ୍ତ୍ରଣା ସ୍ୱର । ସବୁ କିଛି ଭୁଲେଇ ଦେବାର ସ୍ୱର । ସବୁ ଭୁଲଭାଲ ହେଇଯାଏ । ଆନମନା ମାଇପିଙ୍କ ଲାଜୁଆ ଓଠରୁ ଶାଢୀର ପଣତ ଖସିଯାଏ । ଇଃସ୍ସ୍ ... ସରମରେ ରଜାଝିଅ ମରିଯାଏ ।

-ଦୁଇ-

କଦମ୍ବ ବଣରେ ଭଗବାନ ରହନ୍ତି । ନିଧଡକ୍ ନିରୋଳା ଜଙ୍ଗଲରେ ବୁଲୁଥାନ୍ତି । ଆକାଶର ଖୋଲା ଛାତିରେ, ପୋଖରୀ ପିଠିରେ, ପତ୍ରର ଓଠରେ ଛବି ଆଙ୍କୁଥା'ନ୍ତି । ତଳକୁ ମୁହଁ ପୋତି ନୀରବରେ ବଂଶୀ ବଜଉଥା'ନ୍ତି । ଅଣ୍ଟାରେ କେବେ ବଂଶୀତ କେବେ ତୁଳୀଟିଏ ଖୋଞ୍ଚି । ଦେଖାହେଲେ ହସି ଦେଉଥାନ୍ତି । ତାଙ୍କୁ ସମସ୍ତେ ଦେଖିଛନ୍ତି । ତୁଠର ମାଇପି ମାନେ ବି । ମୁହଁରେ ସଜଫୁଟା ହସଟିଏ ପିନ୍ଧି ସିଏ ଘୁରି ବୁଲୁଥାନ୍ତି । ହେଲେ ସେମାନେ ଜାଣନ୍ତିନି, ଗାଈ ଗୋଠ ଧରି ଫେରୁଥିବା ସେଇ ଶ୍ୟାମଳ ବର୍ଣ୍ଣର ଟୋକାଟି କଦମ୍ବ ବଣରେ ରହେ ବୋଲି । ଯିଏ ପାଣି, ପଦ୍ମ, ଜହ୍ନ, ସ୍ତନ ଆଉ ଜଘନର ଚିତ୍ରକରିବ ବୋଲି ନିଃଂଶବ୍ଦରେ ବିରହର, ବେଦନାର ବଂଶୀ ଫୁଙ୍କୁଥାଏ ସାରା ଜୀବନ ।

-ତିନି-

ରଜାଝିଅ ନିଦରେ ସ୍ୱପ୍ନ ଦେଖେ । ଚମ୍ପା, ଚାମେଲି,ବଉଳ, ମାଳତୀର କୁଞ୍ଜ ଭିତରେ ସେଇ କୁହୁକ ପୋଖରୀ । ପୋଖରୀରେ ସାତତାଳ ପାଣି । କାଚକେନ୍ଦୁ ପାଣି । ପୋଖରୀ ହୁଡାରେ ଗଛର ଡାଳରେ ପକ୍ଷୀମାନେ ଗୀତ ଗାଉଥାନ୍ତି । ଏତିକି ବେଳେ, ନିଛାଟିଆ

ଖରାବେଳଟାରେ ବଇଁଶୀର ସ୍ୱର ଭାସିଆସେ ଧୀରେ ଧୀରେ । ଖ୍ରୁ-ଉ-ବ୍ ଧି-ଇରେ ଧି-ଇ-ରେ । ଧିରେ ଧିରେ ବ୍ୟାପି ଯାଏ ଜଙ୍ଗଲକୁ, ଆକାଶକୁ, ଜନପଦ, ରଜାଘର ନଅରକୁ । ଧୀରେ ଧୀର ମୋହଗ୍ରସ୍ତ ସମଗ୍ର ନଗର । ରଜା ଝିଅ ଥୟଧରି ପାରେ ନାହିଁ । ଧାଇଁ ଯାଏ । ଗଛ ବୃଛ, ଗାଁ ଗଣ୍ଡା, ତୋଟା, ବାଡି ଡେଇଁ । ଖୋଜି ବୁଲେଇ ପୋଖରୀ ହୁଡ଼ାରେ ତା'ର ସେଇ ଅତିପ୍ରିୟ ଚମ୍ପା ଓ କଦମ୍ବ ବନରେ କାହିଁ କିଏ କୋଉଠି ବି ନାହିଁ । ଖାଲି ବଂଶୀର ସ୍ୱର ଶୁଭୁଥାଏ । ଦୂରରେ, ବହୁତ ଦୂରରେ । ରଜାଝିଅ ଛାତି ତଳେ ଦକ୍ ଦକ୍ ହୁଏ । ସେ ଆଉ ଚାଲି ପାରେ ନାହିଁ । କ୍ଳାନ୍ତ ରାଜ ଜେମା ଲତା କୁଞ୍ଜର ଗହଳରେ ବିଶ୍ରାମ ନେଉଥିବା ବେଳେ ବଂଶୀଟେ ପାଏ । କାହାର ଏ ବଂଶୀ !! ସାରାରାତି ବାଜି ବାଜି ଏଇମାତ୍ର ଚୁପ୍ ହେଇଯାଇଥିବା ବଂଶୀ । ଆଦରରେ, ବିସ୍ମୟରେ ଗୋଟେଇ ନେବା ବେଳେ ଚଉଦିଗ ଅଗୁର ଏବଂ ଚନ୍ଦନ ରେ ମହକୁଥାଏ । ରଜାଝିଅ କଡ ନେଉଟଣଏ ତ ନିଦ ଭାଙ୍ଗିଯାଏ ।

-ଚାରି-

ଏବେ କେବେ କେମିତି ଜହ୍ନ ଉଇଁଲେ ତାଙ୍କ କଥା ମନେପଡେ । ଝର୍କା ସିଆଡେ ଚାହିଁଲେ ପୋଖରୀ ହୁଡାରେ ଥାକ ଥାକ ମାଳମାଳ କଂକ୍ରିଟ୍ କୋଠର ଜଙ୍ଗଲ । ଆଉ ସେଠି କେହି ଝର୍କା ଖୋଲି ମଧୁମାଳତୀର ପତ୍ରକୁ ଆଡ଼େଇ ଜହ୍ନକୁ ଦେଖେନି । କେବେ କେମିତି କାନ ଡେରିଲେ ବଂଶୀର ଛିଣ୍ଡା ଛିଣ୍ଡା ସ୍ୱର ଶୁଭେ ... ଦୂରରେ ... ଖୁଉବ୍ ଦୁଉରେ ... ଦିଗ୍‌ବଳୟରେ ।

(ଚନ୍ଦ୍ରଶେଖରଙ୍କ Bathing Ghat, Blue God ଏବଂ The Flute ଚିତ୍ର ଆଧାରରେ)



# ସୁବ୍ରତ କୁମାର ମଲ୍ଲିକ

## ସ୍ଲାଇଡ୍ ଶୋ

ସନ୍ଧ୍ୟା ପାଞ୍ଚଟାରେ ଖଲିକୋଟ ଉଆସ ହଠାତ୍ ନିଶୁନ୍ ହୋଇଯାଏ, ଅଧ୍ୟାପକ ଓ ଛାତ୍ରମାନେ ମିଶି ବଜାରକୁ ଚାହା ପିଇବାକୁ ଚାଲିଯାଆନ୍ତି । ସେଇ ସମୟରେ ଉଆସଟା ଖାଁ ଖାଁ ଗୋଡ଼ାଏ କିନ୍ତୁ ଜଣେ ଭାବୁକ ପାଇଁ ଏକାନ୍ତରେ ଚାରିପଟର ସବୁଜିମା ଉପଭୋଗ୍ୟ । ଚନ୍ଦ୍ରଶେଖର ସାର୍ କହିଲେ, ଆମେ ତଳକୁ ଯିବାନି ଏହିଠାରେ ଚାହା ପିଇବା । ହେମନ୍ତ ଚାହା ତିଆରି କଲା । ରାଓସାର୍ ଚାରିଆଡ଼କୁ ତୃପ୍ତିଭରା ଚାହାଣିଟିଏ ବୁଲାଇଆଣି ୪୫ ବର୍ଷ ତଳର କଥାକୁ ମନେପକାଉଥିଲେ । ମନେପଡ଼ିଯାଉଥିଲା ସତେ ଯେମିତି ଉଆସ ଉପରୁ ଗୁରୁ ଶରତ ଚନ୍ଦ୍ର ପ୍ରାର୍ଥନାସଭାକୁ ଡ଼ାକି ଦେଇ ଗଲେଣି ।

ପ୍ରାର୍ଥନା ପରେ ଚିତ୍ର ସମ୍ପର୍କରେ ଆଲୋଚନା ହେବ । ତଳ କ୍ଲାସର ଦିନନାଥ ସଭା ଆୟୋଜନରେ ଲାଗି ପଡ଼ିଥିବ, ଆଉ କାହାର କେଉଁ କଥା, ପ୍ରାର୍ଥନା ପରେ ଦିନନାଥର ସବୁ ପରିବା ପଡ଼ିଥିବା ଗୁଆଘିଅ ଖେଚୁଡ଼ିରେ ମନ । ପ୍ରାୟ ସବୁବେଳେ ଦିନନାଥ ସୁଦ୍ୱାଦ ଖେଚୁଡ଼ିର ଆୟୋଜକ ଅଟନ୍ତି । ଦିନନାଥ ସବୁବେବେଳ ଚନ୍ଦ୍ର ଶେଖରଙ୍କ ପାଖେ ପାଖେ ଥାଆନ୍ତି । ଗଂଜାମ ଛାତ୍ରାବାସର ନିକଟତମ ବଂଧୁ ହିସାବରେ ଅବା ଗୁରୁ ଶରତ ଚନ୍ଦ୍ରଙ୍କର ପ୍ରିୟ ଛାତ୍ର ହିସାବରେ ଭାରି ଆତ୍ମୀୟତା ଥାଏ ଦୁଇଜଣଙ୍କ ମଧ୍ୟରେ । ତଳ ଉପର କ୍ଲାସର ଭେଦଭାବ ନଥାଏ । ଆଉ ଏକ ଆକର୍ଷଣ ଯେ ଚନ୍ଦ୍ରଶେଖର ଭଲ ରାନ୍ଧିବା ଓ ଦିନନାଥଙ୍କର ବେଶି ଖାଇବା । ସେ ବିଷୟରେ ଦିନନାଥ କୁହନ୍ତି ଗରିବ ବ୍ରାହ୍ମଣ ତ ସାଧାରଣରେ ଖାଦ୍ୟପ୍ରତି ଲୋଭ ରହିବା ସ୍ୱାଭାବିକ । ଏମିତି ବି ହୋଇଛି ଚନ୍ଦ୍ରଶେଖର ଆଉଟ୍‌ଡ଼ୋର ଷ୍ଟଡ଼ି ଯାଇଥିଲା ବେଳେ ତାଙ୍କ ପାଇଁ ରହିଥିବା ଖାଦ୍ୟକୁ ଦିନନାଥ ଚଳୁ କରି ଚୁପ୍‌ଚାପ୍ ପେଷ୍ଟିଙ୍ଗ୍ କରିବାରେ ବ୍ୟସ୍ତଥାନ୍ତି । ପଚାରିଲେ କୁହନ୍ତି ଭୋକ ହେଉଥିଲା ଖାଇଦେଲି । ଚନ୍ଦ୍ରଶେଖର ନାଚାର । ଚନ୍ଦ୍ରଶେଖର ପୁଣି ଖାଦ୍ୟ ରାନ୍ଧନ୍ତି । ଦିନନାଥଙ୍କର ଏପରି ଅଭ୍ୟାସ ଚନ୍ଦ୍ରଶେଖରଙ୍କର ମା'ଙ୍କର ଭାରି ପସନ୍ଦ । ଦିନନାଥଙ୍କର ଖାଇବାରେ ଯେତିକି ଆନନ୍ଦ ମା'ଙ୍କର ଚାରୁପାଣି, ଆମ୍ବିଳ, ଦହିଭାତ, ସମ୍ବର, ଟମାଟୋ ଖଟା ଓ ମୁନିକା ବେଶର ରାନ୍ଧି ପରଷିବାରେ ସେତିକି ବେଶି ଆନନ୍ଦ, ଦିନନାଥଙ୍କୁ ତୃପ୍ତିରେ ଖାଉଥିବାର ଦେଖିଲେ ମା ବହୁତ ଖୁସି ହୁଅନ୍ତି । ଆଜିର ଦିନନାଥ କୁହନ୍ତି ଚନ୍ଦ୍ରଙ୍କ ମା'ଙ୍କର ବିଶ୍ୱାସ ବ୍ରାହ୍ମଣକୁ ଖୋଇ ପିଆଇ ତୃପ୍ତି କରିପାରିଲେ ପିଲାମାନଙ୍କର ମାନେ ଚନ୍ଦ୍ରଶେଖରଙ୍କର ମଙ୍ଗଳ ହେବ ।

ହଠାତ୍ ହେମନ୍ତର ଡ଼ାକ ସାର୍ ଚାହା । ମୁଁ କହିଲି ଖାସ୍ ଆପଣଙ୍କ ପାଇଁ ହେମନ୍ତ ଘରୁ କ୍ଷିର ଆଣି ଚାହା କରିଛି । ସମସ୍ତ ଖଲ୍ଲିକୋଟ୍‌ର ପୁରାତନ ଛାତ୍ର ଓ ଶିକ୍ଷକଙ୍କୁ ହେମନ୍ତ ସେବା କରିବାର ସୁଯୋଗ ପାଇଛି ଓ ପ୍ରିୟ ଭାଜନ ମଧ ହୋଇପାରିଛି । ସମସ୍ତେ ଚାହା କପ୍‌ରେ ଗୋଟିଏ ଗୋଟିଏ ସୁଡ଼ୁକି ମାରି ନିରବତାକୁ ଭଙ୍ଗ କଲେ । ଡ଼ି.ଏନ୍. ରାଓ ସାର୍ କହିଲେ ଆନିଆ କେମିତି ଲାଗୁଛି ? ଚନ୍ଦ୍ରରାଓ ସାର୍ କହିଲେ ଯାହା କୁହ ସୁବ୍ରତ, ଖଲ୍ଲିକୋଟରେ ଜୀବନ ଅଛି । ଏଠାରେ କଳା ସାଧାନା କରିବାରେ ଅନେକ ତୃପ୍ତି ମିଳିଥାଏ । ଚନ୍ଦ୍ରଶେଖର ରାଓ ଆମ ଗୁରୁମାନଙ୍କର ସାଙ୍ଗ ବୋଲି ତାଙ୍କୁ ସାର୍ ସମ୍ବୋଧନ କରୁ । ଛାତ୍ର ସମୟରୁ ହିଁ ବି.କେ. କଲେଜର ଅନ୍ୟତମ ଅଧ୍ୟାପକ ଭାବେ ଆମେ ମାନିଥାଉ, ଯଦିଓ ସେ ଆମର ସରକାରୀ ଅଧ୍ୟାପକ ନଥିଲେ କିନ୍ତୁ ସବୁବେଳେ ସେ ଆମ ମହାବିଦ୍ୟାଳୟକୁ ଆସୁଥାନ୍ତି । ଆଉ ଆମେ ତାଙ୍କର କଳା କୌଶଳକୁ ଅକ୍ତିଆର କରୁଥିଲୁ । କାରଣ ଚିତ୍ରକଳାରେ କୌଣସି ଗୁରୁ ହାତଧରି କିମ୍ୱା କୌଣସି ସୂତ୍ର ମାଧ୍ୟମରେ ଶିକ୍ଷାଦିଅନ୍ତିନି । ଛାତ୍ର

ତାର ନିଜର ଦକ୍ଷତା ଯୋଗୁଁ ଯେତିକି ଗ୍ରହଣ କରେ ସେ ସେତିକି ଶିଖେ । ପରବର୍ତ୍ତୀ ସମୟରେ ଅନେକ ଥର ତାଙ୍କ ସହିତ ସହକର୍ମୀ ଭାବରେ ଚିତ୍ରକଳା ଶିବିରରେ ଯୋଗ ଦେଇ କାର୍ଯ୍ୟ କରିବାର ଆନନ୍ଦ ମଧ୍ୟ ନେଇଛି । ସେଥିରୁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ, ନାଲକୋ ଦାମନଯୋଡ଼ିରେ, କୋଣାର୍କ ଯାତ୍ରୀ ନିବାସରେ । ସେଥିରୁ ଗୋଟିଏ ଅଭୁଲା ସ୍ମୃତି ଏଠାରେ ଉଲେଖ କରାଯାଇ ପାରେ ।

ନାଲକୋ ଦ୍ୱାରା ଆୟୋଜିତ ଚିତ୍ରକଳା ଶିବିର ଦାମନଯୋଡ଼ି ଠାରେ ଆୟୋଜନ କରାହୋଇଥାଏ । ପାଠୀ ସାର୍ ତାର ସଂଚାଳକ ଥାନ୍ତି । ନାଲ୍‌କୋ ତରଫରୁ ସବୁ ପ୍ରକାର ବ୍ୟବସ୍ଥା ଅତି ଉଚ୍ଚକୋଟୀର କରାଯାଇଥାଏ । ନାଲକୋର ଖଣି ଏରିଆ ପଞ୍ଚପଟମାଳି ପାହାଡ଼ର ଅଂଶ ବିଶେଷ । ଲୋକଶ୍ରୁତି ଅନୁସାରେ ମହାକବି କାଳିଦାସ ଏହିଠାରେ ତାଙ୍କର ମହାକାବ୍ୟ 'ମେଘଦୂତମ୍' ରଚନା କରିଥିଲେ । ଏଠାରେ ବର୍ଷାଋତୁ ବ୍ୟତୀତ ମଧ୍ୟ ଅନ୍ୟ ସମୟରେ ମେଘର ସୌନ୍ଦର୍ଯ୍ୟକୁ ଖୁବ୍ ମନଭରି ଉପଭୋଗ କରାଯାଇ ପାରେ । ସମୁଦ୍ର ପତନ ଠାରୁ ଚାରି ହଜାର ପାଞ୍ଚଶହ ଫୁଟ ଉଚ୍ଚ ହୋଇ ଥିବାରୁ ମେଘ ଆସି ମାଟିକୁ ଛୁଇଁ ଯାଏ ।

ଚନ୍ଦ୍ରଶେଖରସାର୍ କହିଲେ ସୁବ୍ରତ ! ମାଟି, ଆକାଶ, ପାହାଡ଼ ଓ ମେଘକୁ ନେଇ ଚିତ୍ରଟିଏ କର । ପାହାଡ଼, ମାଣ୍ଡିଆ କ୍ଷେତ, ଘାସ ଓ ଗଛ ଭିତରେ ମୁଁ ହଜିଯାଇଥିଲି । ମାଇଲ ମାଇଲ ଧରି ପ୍ରାକୃତିକ ଭୂଦୃଶ୍ୟ ଆମେ ଉପଭୋଗ କରୁଥାଉ । ଅନ୍ୟ ଏକ ପାହାଡ଼କୁ ରାମହରି ଭାଇ କୌତୁହଳ ବଶତଃ ଟେକାଟିଏ ଫିଙ୍ଗି ଦେଲେ । ଭାବବିଭୋର ଚନ୍ଦ୍ରସାର୍ କହିଲେ ଟେକା ମାରନି ଛବି ଖରାପ ହୋଇଯିବ ।

ଚାହା କପ୍ ଦେଇ ହେମନ୍ତ ବିଦାୟ ନେଲାଣି । ଆମେ ବସିଥାଉ ପାଓ୍ୱାର ଆସିବା ପର୍ଯ୍ୟନ୍ତ । ମହାବିଦ୍ୟାଳୟର ନିଜସ୍ୱ ପାଓ୍ୱାର ଜେନେରେଟର୍ ଅଛି ମାତ୍ର ତାହା କୌଣସି କାମରେ ଆସେନି ।

ହଠାତ୍ ପାଓ୍ୱାର ଆସିଲା । ଆମେ ପେଣ୍ଟିଙ୍ଗ ଡ଼ିପାର୍ଟମେଣ୍ଟ ଆଡ଼କୁ ଚାଲିଲୁ ।

ଚନ୍ଦ୍ରଶେଖର ସାର୍ ଆରମ୍ଭ କଲେ ତାଙ୍କର ବିଗତ ଦିନର ସ୍ମୃତି । କାହିଁକି କେଜାଣି ସବୁ ପୁରାତନ ଛାତ୍ରମାନେ ଖଲ୍ଲିକୋଟ ଆସିଲେ ଭାବାକାଶରେ ଭାସିଯାଆନ୍ତି । ସତେ ଯେମିତି ତାଙ୍କର ହଜିଲା ପ୍ରାଣକୁ କିଛି ସମୟ ପାଇଁ ଆଉ ଥରେ ଫେରି ପାଆନ୍ତି । ତା'ପରେ ସେ କହିଲେ ଖଲ୍ଲିକୋଟ ରାଜାଙ୍କ ସହିତ ତାଙ୍କର ସମ୍ପର୍କ ।

ଭରପୁର ପିଲା ଦେଖି ଚନ୍ଦ୍ରସାର୍ କହିଲେ ଏ କ'ଣ ଏତେ ପିଲା । ସାର୍‌ଙ୍କୁ ଦେଖି କୋଳାହଳ କମିଗଲା । ପ୍ରତ୍ୟେକ ପିଲାଙ୍କର ଉତ୍‌କଣ୍ଠା ଥାଏ କ'ଣ କହିବେ ସାର୍ । ଚିତ୍ରକଳାରେ ଗୋଟିଏ ଧାରା ସୃଷ୍ଟି କରିଥିବା, ଜାମିନୀ ରାୟଙ୍କ ଦ୍ୱାରା ଅନୁପ୍ରାଣିତ

ହୋଇଥିବା, ଚିତ୍ରକଳାରେ ଓଡ଼ିଆତ୍ୱ ବଜାୟ ରଖିଥିବା ଜଣେ ଓଡ଼ିଆ ଚିତ୍ରକର ଦେଶ ବିଦେଶରେ ଚିତ୍ର ଆଙ୍କି ପ୍ରଶଂସାରପାତ୍ର ହେବା କମ୍ କଷ୍ଟକର ନୁହେଁ ଯାହାକି ସେ ତାଙ୍କର ଜୀବଦଶାରେ ହାସଲ୍ କରିଥିଲେ । ତାଙ୍କୁ ଶୁଣିବାକୁ, ଭାବର ଆଦାନପ୍ରଦାନ କରିବାକୁ ଆଜି ଖଲ୍ଲିକୋଟ କଳା ମହାବିଦ୍ୟାଳୟର ସମସ୍ତ ଛାତ୍ରଛାତ୍ରୀ, ଅଧ୍ୟାପକ ଗୋଟିଏ ଛାତ ତଳେ ଏକତ୍ରିତ । ଆରମ୍ଭ ହେଲା ସ୍ଲାଇଡ୍ ଶୋ ।

ଏହି ସ୍ଲାଇଡ୍ ଶୋ ଓ ରାଓ ସାର୍‌ଙ୍କ ସାଙ୍ଗରେ ଆଲୋଚନା ଆମ ପାଇଁ ଶେଷ ଥିଲା ।

■

## କପିଳାସ ଭୂୟାଁ
## ତାଙ୍କ ଉଦ୍‌ଭାସିତ ମୁହଁ

ଚନ୍ଦ୍ରଶେଖର ରାଓଙ୍କ ସହ ଶେଷ ଦେଖା କେବେ ହୋଇଥିଲା ମୋର ଆଉ ମନେପଡୁନି । ହୁଏତ ତିନି ଚାରି ମାସ ପୂର୍ବର ବା ଆହୁରି ଅଧିକ ସମୟ ହେବ ! ଦେହ ଖରାପ କଥା ଶୁଣିବା ପରେ ଯାଇ ଦେଖା କରିବାକୁ ବହୁତ ଇଚ୍ଛା ହେଉଥିଲେ ବି ନିଷ୍କ୍ରିୟମୂଳକ ଭାବେ ମୁଁ ଯାଇ ତାଙ୍କୁ ଦେଖା କଲିନାହିଁ । କିନ୍ତୁ ବରାବର ତାଙ୍କ ବିଷୟରେ ଖବର ପାଉଥିଲି ବନ୍ଧୁ ଚିତ୍ରଶିଳ୍ପୀ ରାମହରି ଜେନାଙ୍କଠାରୁ । ରାମହରି ତାଙ୍କର ଛାତ୍ର - ସେ ନିୟମିତ ତାଙ୍କ ପାଖକୁ ଯାଉଥିଲେ। ତାଙ୍କ କଥା କହୁ କହୁ ରାମହରି ଆଖିରେ ପାଣି ଆସିଯିବା ମୁଁ ଦେଖିଛି ।

ସେ ଜାଣିଥିଲେ ଯେ ସେ ଅସୁସ୍ଥ, କିନ୍ତୁ କେଉଁ ରୋଗରେ ପୀଡ଼ିତ ଥିଲେ ତାହା ତାଙ୍କୁ ଜଣାଇ ଦିଆଯାଉ ନଥିଲା । ତାଙ୍କୁ ଯେ କେହି ଭେଟିବାକୁ ଯାଉଥିଲା ସେ ବହୁତ ଆଗ୍ରହରେ ଆହୁରି ଅନେକ କାମ କରିବାକୁ ଇଚ୍ଛା ଅଛି ବୋଲି କହୁଥିଲେ । କିନ୍ତୁ ଶାରିରୀକ ଅସୁସ୍ଥତା ଜନିତ ଅସହାୟତା କିପରି ତହିଁରେ ପ୍ରତିବନ୍ଧକ ସାଜିଛି କହି ମନମାରି ଦେଉଥିଲେ । ଚନ୍ଦ୍ରଶେଖର ମୋ ଦୃଷ୍ଟିରେ ଜଣେ ଉଚ୍ଛଳ ବ୍ୟକ୍ତିତ୍ୱ, ଜଣେ କଳାପ୍ରାଣ ଚିତ୍ରଶିଳ୍ପୀ । ତେଣୁ ତାଙ୍କୁ ଅସୁସ୍ଥ ଅବସ୍ଥାରେ ଦେଖିବା, ଯେତେବେଳେ କି ସେ ତାଙ୍କର ଅସହାୟତାକୁ ବଖାଣି ମନ ମାରିଦେବେ - ତାହାକୁ ସାମ୍ନା କରିବାକୁ ହୁଏତ ମୋର ସାହସ ନଥିଲା ! ମୋ ନିଜର ଅସ୍ତିତ୍ୱବାଦୀ ମାନସିକତା ବି ତାଙ୍କୁ ଦେଖା ନକରିବାର ଅନ୍ୟ ଏକ ପ୍ରମୁଖ କାରଣ ହୋଇପାରେ ! ଏପରିକି ସେ କଳିଙ୍ଗ ହସ୍‌ପିଟାଲ୍‌ରେ ଚିକିତ୍ସିତ ହେଉଥିଲା ବେଳେ ମଧ୍ୟ ତାଙ୍କୁ ଦେଖିବାକୁ ଗଲିନାହିଁ, ଯଦିଓ ମୁଁ ଚନ୍ଦ୍ରଶେଖରପୁରରେ ରହେ ଓ ହସ୍‌ପିଟାଲ୍ ମୋ ଘରଠାରୁ ମାତ୍ର ଅଧା କିଲୋମିଟର ଦୂର !!

କିନ୍ତୁ ତାଙ୍କ ଖବର ରଖୁଥିଲି । ତାଙ୍କ ଅବସ୍ଥା ସଂପର୍କରେ ଅନ୍ୟମାନଙ୍କ ଠାରୁ ପଚାରି ବୁଝୁଥିଲି । ଡକ୍ଟର ଦିନନାଥ ପାଠୀ ଓ ରାମହରି ପ୍ରାୟ ପ୍ରତ୍ୟହ ହସ୍‌ପିଟାଲକୁ ଯାଉଥିଲେ । ବନ୍ଧୁ ଚନ୍ଦ୍ରଭାନୁ ପଟ୍ଟନାୟକ ଓ ଅସିତ୍ ମହାନ୍ତି ମଧ୍ୟ ତାଙ୍କୁ ଦେଖିବାକୁ ହସ୍‌ପିଟାଲକୁ ଯାଉଥିଲେ । ତାଙ୍କ ଜ୍ୱାଇଁ ପ୍ରଦୋଷ ସହ ପ୍ରାୟତଃ ପ୍ରତ୍ୟେହ ଦେଖା ହେଉଥିଲେ । ସବୁ ଖବର ମତେ ଠିକ୍‌ଠାକ୍ ମିଳିଯାଉଥିଲା ।

ଚନ୍ଦ୍ରଭାନୁ ଓ ଅସିତ୍ ଚନ୍ଦ୍ରଶେଖରଙ୍କ ପ୍ରତି ଥିବା ସେମାନଙ୍କ ପ୍ରଗାଢ଼ ଅନୁରାଗରୁ ଅତି ପ୍ରଶଂସନୀୟ କାମଟିଏ କଲେ - ତାଙ୍କ ଆତ୍ମଜୀବନୀମୂଳକ ପୁସ୍ତକ 'ଚନ୍ଦ୍ରାୟନ'ର ପ୍ରକାଶନ ନିଶ୍ଚିତ ରୂପେ ତାଙ୍କ ଜୀବନର ଅତି ଗୁରୁତ୍ୱପୂର୍ଣ୍ଣ ଘଟଣା ଥିଲା । ଅସିତ୍ ସହ ତାଙ୍କର ଘନିଷ୍ଠତା ଅତି ଈର୍ଷଣୀୟ ! ମଧ୍ୟ-ଅଶିଦଶକରେ ଅସିତ୍ ହିଁ ପ୍ରଥମେ ଚନ୍ଦ୍ରଶେଖରଙ୍କ ଉପରେ ଲେଖାଟିଏ ପ୍ରସ୍ତୁତ କରିବାକୁ ମତେ କହିଥିଲେ । ବହୁ ସମୟରେ ଅସିତ୍‌ଙ୍କ ନିକଟରେ ସେ ମନକଥା ଖୋଲି କହି ପାରୁଥିଲେ ବୋଲି ମୋର ଦୃଢ଼ ବିଶ୍ୱାସ ।

ଦିନନାଥଙ୍କ ସହ ତାଙ୍କର ଘନିଷ୍ଠତା ସମସ୍ତ ସନ୍ଦେହର ଉର୍ଦ୍ଧ୍ୱରେ - ସେମାନେ ଓଡ଼ିଶାରେ କଳା-ପ୍ରିୟତାର ପ୍ରସାର ପାଇଁ ଏକାଠି କାମ କରିଛନ୍ତି । 'ୱାର୍କିଂ ଆର୍ଟିଷ୍ଟ ଆସୋସିଏସନ୍' ପରି ସଂଗଠନମୂଳକ କାମ ଓ ଅନ୍ୟାନ୍ୟ ଅନେକ କଳା ଅନୁଷ୍ଠାନ ଏକାଠି କରିଛନ୍ତି । କିନ୍ତୁ ଦିନନାଥଙ୍କୁ ସେ ସମ୍ପୂର୍ଣ୍ଣ ବିଶ୍ୱାସକୁ ନେଉ ନଥିଲେ ବୋଧହୁଏ, ନଚେତ୍ ନିଜ ପୁସ୍ତକ ପ୍ରକାଶନ ପାଇଁ ସେ ଅସିତ୍‌ଙ୍କ ନିକଟକୁ ଯାଇଥାନ୍ତେ କାହିଁକି ?

ଯାହା ବି ହେଉ 'ଶତାବ୍ଦୀ ମିଡ଼ିଆ' ଆନୁକୂଲ୍ୟରେ 'ଚନ୍ଦ୍ରାୟନ'ର ପ୍ରକାଶନ ତାଙ୍କୁ ବହୁ ମାତ୍ରାରେ ଆନନ୍ଦିତ କରିଥିବ ବୋଲି ମୋର ବିଶ୍ୱାସ । ସେ ହସ୍‌ପିଟାଲ୍‌ରେ ଥିବାବେଳେ ଗୋଟିଏ 'ଡମି କପି' ପ୍ରସ୍ତୁତ କରି ତାଙ୍କୁ ଦେଖାଯାଇଥିଲା । ପ୍ରକାଶନ ପରେ ଜାନୁଆରୀ ୧୫ ତାରିଖ ଦିନ ପୁସ୍ତକଟିର 'ଲୋକାର୍ପଣ' ଉତ୍ସବ ଅନୁଷ୍ଠିତ ହୋଇଥିଲା। ସେହି ଦିନ ହିଁ ସେ ହସ୍‌ପିଟାଲରୁ ଘରକୁ ଫେରିଥିଲେ । ପୁସ୍ତକଟିର ପ୍ରକାଶନ ଦ୍ୱାରା ତାଙ୍କ ଜୀବନର 'ଅପୂର୍ଣ୍ଣ ଆଶା'ଟି ପୂରଣ ହୋଇଥିଲା । ତେବେ ଏହା ଫଳରେ ତାଙ୍କର 'ବଞ୍ଚିବାର ଇଚ୍ଛାଶକ୍ତି' ଦୁର୍ବଳ ହୋଇଯିବ ବୋଲି ମୋ ମନକୁ ଆସିଥିଲା! ତାହା ହିଁ ସତ ହେଲା !! ଏହାର ମାତ୍ର ତିନି ସପ୍ତାହ ପରେ ହିଁ ସେ ଚାଲିଗଲେ !!!

ଏବେ ମନକୁ ଆସୁଥିବା ତାଙ୍କର ମୁହଁଟି ତାଙ୍କ ଚିତ୍ରପଟର ଚରିତ୍ରର ମୁହଁ ପରି ମତେ ଦିଶିବାକୁ ଆରମ୍ଭ କଲାଣି -ଆଖି ଦିଓଟି ଭିଡ଼ା ଭିଡ଼ା ଓ ମୁହଁ ବାହାରକୁ ପ୍ରସାରିତ, ମୁହଁରେ ଶାନ୍ତ ଶୀତଳ ଭାବ ଓ ମୃଦୁହାସ୍ୟ, ଭାବ ପ୍ରକାଶରେ ଆଧୁନିକ କିନ୍ତୁ ଲାଗୁଛି ସତେ ଯେମିତି ସାଧାରଣ ଜଣେ ଲୋକ କଳା ଚରିତ୍ରର ମୁହଁ ଭଳି ଓ ସେ ମୁହଁଟିର ଚତୁଃପାର୍ଶ୍ୱରେ ରହିଛି ଗୋଟିଏ ବର୍ଣ୍ଣମୟ ଆଭାମଣ୍ଡଳ !! ■

# ରମାକାନ୍ତ ସାମନ୍ତରାୟ

## ଦୁଇଟି ବହି

ଓଡ଼ିଶାର ଆଧୁନିକ ଚିତ୍ରକଳା ଆନ୍ଦୋଳନରେ ଯେଉଁ କେତୋଟି ପ୍ରମୁଖ କାରଣଙ୍କ ଅବଦାନ ରହିଛି, ତନ୍ମଧ୍ୟରୁ ୧୯୬୯ରେ ଭୁବନେଶ୍ୱରରେ ୱାର୍କିଙ୍ଗ ଆର୍ଟିଷ୍ଟସ୍ ଆସୋସିଏସନ୍‌ର ପ୍ରତିଷ୍ଠା ଅନ୍ୟତମ । ଚିତ୍ରକଳା ପ୍ରଦର୍ଶନୀ, ସେମିନାର୍ ଆୟୋଜନ, ଚିତ୍ରକଳା ସଂପର୍କିତ ବୁଲେଟିନ୍ ପ୍ରକାଶ ସହ ପୁସ୍ତକ ପ୍ରକାଶନ ଦ୍ୱାରା ଏହି ସଂସ୍ଥା ବହୁଦିଗରୁ ଓଡ଼ିଶାର ଆଧୁନିକ ଚିତ୍ରକଳା ଆନ୍ଦୋଳନକୁ ଆଗେଇନେବାରେ ସହଯୋଗ କରିଛି ।

ଆଜି ଦିବଂଗତ ଚିତ୍ରଶିଳ୍ପୀ ଏନ୍.ଚନ୍ଦ୍ରଶେଖର ରାଓ ସ୍ମୃତିରେ ଆସନ୍ତି । ସେ ଜଣେ ସଫଳ ଚିତ୍ରଶିଳ୍ପୀ ଥିଲେ ଓ ଶେଷ ପର୍ଯ୍ୟନ୍ତ ୱାର୍କିଂ ଆର୍ଟିଷ୍ଟ୍ ଆସୋସିଏସନ୍‌ର ଚେୟାରମ୍ୟାନ୍ ଥିଲେ । ଗୋଟିଏ ଦିଗରେ ଛବି ଆଙ୍କୁଥିଲେ, ଅନ୍ୟଦିଗରେ ବନ୍ଧୁମାନଙ୍କ ସହ ମିଶି ସଂଗଠନ କରୁଥିଲେ, ଓଡ଼ିଶାର ଆଧୁନିକ କଳା ଆନ୍ଦୋଳନକୁ ପାଦେ ପାଦେ କରି ଆଗେଇଯିବାରେ ସହଯୋଗ କରୁଥିଲେ ।

ଯେଉଁ ସମୟରେ ଭୁବନେଶ୍ୱରରେ ଡକ୍ଟର ଦିନନାଥ ପାଠୀଙ୍କର ସଂପାଦକତ୍ୱ ଓ ଅନନ୍ତ ପଣ୍ଡାଙ୍କ ଚେୟାରମ୍ୟାନ୍‌ସିପ୍‌ରେ ୱାର୍କିଂ ଆର୍ଟିଷ୍ଟ୍ ଆସୋସିଏସନ୍‌ର ଆରମ୍ଭ ହୋଇଥିଲା ସେ ସମୟରେ ଶ୍ରୀଯୁକ୍ତ ରାଓ ସଂସ୍ଥାରେ ନଥିଲେ ମଧ, ପରବର୍ତ୍ତୀ ସମୟରେ ଜଣେ ସକ୍ରିୟ ସହଯୋଗୀ ଓ ପରେ ୧୯୮୮ରେ 'ୱା' ର ଚେୟାରମ୍ୟାନ୍ ହୋଇଥିଲେ । ସେ ଚେୟାରମ୍ୟାନ୍ ଦାୟିତ୍ୱ ଗ୍ରହଣ କଲାପରେ ଦିନନାଥ ପାଠୀଙ୍କ ପରିକଳ୍ପନାକୁ ଭିତ୍ତିକରି ୱାର୍କିଙ୍ଗ ଆର୍ଟିଷ୍ଟ୍ ଆସୋସିଏସନ୍‌ର ଅନେକ କାର୍ଯ୍ୟ ମଧ୍ୟରୁ ଦୁଇଟି ପ୍ରମୁଖ କାର୍ଯ୍ୟ ଉଲ୍ଲେଖନୀୟ । ପ୍ରଥମଟି ହେଲା ୧୯୯୭ ମସିହାରେ ୬ ଜଣ ସମସାୟିକ ଚିତ୍ରଶିଳ୍ପୀଙ୍କ ଉପରେ ଡକ୍ଟର ଦିନନାଥ ପାଠୀ ଓ ଡକ୍ଟର ରମେଶ ପ୍ରସାଦ ପାଣିଗ୍ରାହୀଙ୍କ ସଂପାଦନରେ ଉଡ୍ଡୀୟାନ୍ ନାମକ ପୁସ୍ତକ ଓ ଦ୍ୱିତୀୟଟି ୧୯୪୫ ରୁ ୨୦୦୧ ପର୍ଯ୍ୟନ୍ତ ଦୀର୍ଘ ଅର୍ଦ୍ଧଶତାବ୍ଦୀର ଓଡ଼ିଶାର ଆଧୁନିକ ଚିତ୍ରକଳାର ପ୍ରଥମ ପ୍ରମାଣିକ ଇତିହାସକୁ ଡକ୍ଟର ଦିନନାଥ ପାଠୀ ଓ ସୌଭାଗ୍ୟ ପାଠୀଙ୍କ ସଂପାଦନରେ ଲିପିବଦ୍ଧ କରି 'ଲେଟ୍ ଏ ଥାଉଜେଣ୍ଡ୍ ଫ୍ଲାୱାର୍‌ସ୍ ବ୍ଲୁମ୍' ପୁସ୍ତକ ପ୍ରକାଶନ ।

ଉଡ୍ଡୀୟାନ୍ ଚିତ୍ରଶିଳ୍ପୀଙ୍କ ସଂପର୍କିତ ଓଡ଼ିଶାରୁ ପ୍ରକାଶିତ ପ୍ରଥମ ବହି ଯାହାର କି ନ୍ୟାସ୍‌ନାଲ୍ ଷ୍ଟାଣ୍ଡାର୍ଡ଼ ଅଛି । ବହିରେ ଛଅଜଣ ଚିତ୍ରଶିଳ୍ପୀଙ୍କର ସମୁଦାୟ ପଚିଶଟି ରଂଗୀନ୍ ଓ ସାତଟି କଳାଧଳା ଛବି ପ୍ରକାଶିତ ହୋଇଛି । ଏହାସହ ଡ଼କ୍ଟର ଦିନନାଥ

ପାଠୀଙ୍କର ଏକ ଭିତ୍ତି ପ୍ରବନ୍ଧ ରହିଛି ଯେଉଁଥିରେ ସେ ଓଡ଼ିଶାର ସମସାମୟିକ ଚିତ୍ରକଳା ସଂପର୍କରେ ଆଲୋଚନା କରିଛନ୍ତି । ଡକ୍ଟର ପାଠୀଙ୍କ ସଂପର୍କରେ ଡ଼କ୍ଟର ରମେଶ ପାଣିଗ୍ରାହୀ ଆଲୋଚନା କରିଥିବା ବେଳେ, ଚନ୍ଦ୍ରଶେଖର ରାଓଙ୍କ ସଂପର୍କରେ ପ୍ରଦୋଷ ମିଶ୍ର, ଶିବ ପାଣିଗ୍ରାହୀଙ୍କ ସଂପର୍କରେ ଦିଲୀପ ତ୍ରିପାଠୀ, କାଶୀନାଥ ଜେନାଙ୍କ ସଂପର୍କରେ ସୌଭାଗ୍ୟ ପାଠୀ, ଡ଼ି. ଏନ୍. ରାଓଙ୍କ ଛବି ସଂପର୍କରେ ସୌରୀନ୍ଦ୍ର ବାରିକ ଓ ରାମହରି ଜେନାଙ୍କ ସଂପର୍କରେ ବିଭୂତି ମିଶ୍ର ଆଲୋଚନା କରିଛନ୍ତି । ବିଧିବଦ୍ଧ ଭାବରେ ଛଅଜଣ ସମସାମୟିକ ଓଡ଼ିଶାର ବିଭିନ୍ନ ସ୍ଥାନର ଚିତ୍ରଶିଳ୍ପୀମାନଙ୍କର ଜୀବନ ଓ ଚିତ୍ରକୁ ନେଇ ପ୍ରଥମ କରି କରାଯାଇଥିବା ପ୍ରୟାସ ସଫଳ ହୋଇଛି । କଳା ଇତିହାସ ଓ କଳା ଆନ୍ଦୋଳନ ସଂପର୍କୀୟ ଆଲୋଚନାର ସୁସ୍ଥ ପରଂପରା ଆରମ୍ଭ ହୋଇଛି । ଭବିଷ୍ୟତର ଆଲୋଚନା ପାଇଁ ପଥ ସୁଗମ ହୋଇଛି ଏବଂ ଓଡ଼ିଶାର ସାଂସ୍କୃତିକ ପରଂପରାର ଏକ ଅନାଲୋଚିତ ପ୍ରମୁଖ ଧାରା ସଂପର୍କରେ ସଚେତନତା ବଢିଛି ।

୨୦୦୧ ରେ ପ୍ରକାଶିତ Let A Thousand Flowers Bloom : Contemporary Art of Orissa ପରି ପୁସ୍ତକ ପ୍ରକାଶ ପାଇବା ଓଡ଼ିଶା ପାଇଁ ପ୍ରଥମ ହୋଇଥିବା ବେଳେ ସମଗ୍ର ଭାରତବର୍ଷ ପାଇଁ ତୃତୀୟ । ଏହା ପୂର୍ବରୁ ମାଡ୍ରାସରେ Contemporary Indian Sculpture : The Madras Metaphor ଓ ବରୋଦାରେ Contemporary Art in Baroda ବହି ପ୍ରକାଶିତ ।

ଇତିହାସ ବ୍ୟତିରେକ ବର୍ତ୍ତମାନକୁ ବୁଝିବା କଷ୍ଟସାଧ । ତେଣୁ ଆଜିର ଆଧୁନିକ କିମ୍ବା ଆଧୁନିକୋତ୍ତର ଚିତ୍ରଭାଷାକୁ ବୁଝିବାକୁ ହେଲେ ଅତୀତକୁ ଆଖି ପକାଇବାକୁ ହୁଏ । ଡକ୍ଟର ଦିନନାଥ ପାଠୀଙ୍କ ସଂପାଦନାରେ ଏପରି ପୁସ୍ତକ ପ୍ରକାଶନଦ୍ୱାରା ଆମର ଆଧୁନିକ ଚିତ୍ରକଳାର ଇତିହାସ ପରବର୍ତ୍ତୀ ପୀଢ଼ି ପାଇଁ ସାଇତା ହୋଇ ରହିପାରିଲା । ପୁସ୍ତକରେ ମୋଟ ପାଞ୍ଚଟି ଅଧ୍ୟାୟରେ, ଓଡ଼ିଶାର ପ୍ରଥମ ପୀଢ଼ିର ଆଧୁନିକ ଚିତ୍ରଶିଳ୍ପୀଙ୍କ ଠାରୁ ବର୍ତ୍ତମାନ ପର୍ଯ୍ୟନ୍ତ ଶତାଧିକ ଚିତ୍ରଶିଳ୍ପୀଙ୍କ ଛବି ସଂବନ୍ଧରେ ଆଲୋଚନା କରାଯାଇଛି ଓ ରଙ୍ଗୀନ ତଥା କଳାଧଳା ଛାପାରେ ତିନିଶହ ପଞ୍ଚଷଠି ଜଣ ଶିଳ୍ପୀଙ୍କର କଳାକୃତି ପ୍ରକାଶ ପାଇଛି । ପୁସ୍ତକରେ ସମୁଦାୟ ୧୩୭ଟି ରଙ୍ଗୀନ ଓ ୨୩୦ଟି କଳାଧଳା ପ୍ଲେଟ୍ ସ୍ଥାନ ପାଇଛି ।

୧୯୪୫ରେ ବିଲାତରୁ ଚିତ୍ରଶିକ୍ଷା କରି ଚିକିଟି ରାଜା ଶରତଚନ୍ଦ୍ର ଦେବ ଓଡ଼ିଶା ଫେରିଲା ପରେ ତାଙ୍କ ରାଜପ୍ରାସାଦରେ ଯେଉଁ ଚିତ୍ରଶିକ୍ଷା ସ୍କୁଲ୍ ଆରମ୍ଭ କରିଥିଲେ ତାହା ବିଧିବଦ୍ଧ ଭାବରେ ୧୯୫୭ରେ ଖଲ୍ଲିକୋଟ ରାଜପ୍ରାସାଦରେ ଆର୍ଟସ୍କୁଲରେ ରୂପାନ୍ତର ହେଲା । ଜୟପୁରର ରାଜା ବିକ୍ରମଦେବ ବର୍ମାଙ୍କ ପ୍ରଚେଷ୍ଟାରେ ଜୟପୁରରେ ୧୯୪୯ରେ ଏକ କଳାଶିକ୍ଷା ସ୍କୁଲ ମଧ୍ୟ ପ୍ରତିଷ୍ଠିତ ହୋଇଥିଲା । ଖଲ୍ଲିକୋଟର ତତ୍‌କାଳୀନ

ଶିକ୍ଷକମାନଙ୍କ ମଧ୍ୟରୁ ଶରତଚନ୍ଦ୍ର ଦେବ, ଅଜିତ୍‌କେଶରୀ ରାୟ, ବିପିନ୍ ବିହାରୀ ଚୌଧୁରୀ, ଅନନ୍ତ ପଣ୍ଡା ଆଦି ଓଡ଼ିଶା ବାହାରେ କଳାଶିକ୍ଷା କରିଥିଲେ ଓ ନିୟମିତ ଛବି ଆଙ୍କୁଥିଲେ । ଏହାଛଡ଼ା ଜୟପୁର ଆର୍ଟସ୍କୁଲର ପ୍ରିନ୍‌ସପାଲ ସିଂହାଦ୍ରି ମହାରଣା, ଗୋପାଳ କାନୁନ୍‌ଗୋ, ବିଦ୍ୟାଧର ବର୍ମା, ମୂରଲୀଧର ଟାଲି ଆଦି ଚିତ୍ରଶିଳ୍ପୀ କଳାସାଧନା କରୁଥିଲେ । ଅବଶ୍ୟ ଗୋପାଳ କାନୁନ୍‌ଗୋ କିଛିଦିନ ଖଲ୍ଲିକୋଟରେ ଅଧ୍ୟାପନା କରିଥିଲେ । ଏମାନେ ସମସ୍ତେ ଓଡ଼ିଶାର ଆଧୁନିକ ଚିତ୍ରକଳାର ପ୍ରଥମ ପୀଢ଼ିର ଶିଳ୍ପୀ ।

ଓଡ଼ିଶାର ଆଧୁନିକ ଚିତ୍ରକଳା ଇତିହାସକୁ ତିନି ପୀଢ଼ିର ଚିତ୍ରଶିଳ୍ପୀଙ୍କ ମଧ୍ୟରେ ଭାଗ କରିଦିଆଯାଇଛି । ପ୍ରଥମ ପିଢ଼ିଙ୍କ ପରେ ଖଲ୍ଲିକୋଟରୁ ପାଠପଢ଼ି ଓଡ଼ିଶାର ଆଧୁନିକ କଳା ଆନ୍ଦୋଳନକୁ ସଂପୂର୍ଣ୍ଣ ନୂତନ ଦିଗ ଦେଇଥିବା ତୃତୀୟ ପିଢ଼ିରେ ସ୍ୱୟଂ ସଂପାଦକ ଡକ୍ଟର ଦିନନାଥ ପାଠୀ ଓ ତାଙ୍କ ସମସାମୟିକ ଶିଳ୍ପୀମାନେ ଅଛନ୍ତି । ଚତୁର୍ଥ ପିଢ଼ି ଆଜିର ଯୁବଶିଳ୍ପୀ । ବହିରେ କେବଳ ଶହ ଶହ ଚିତ୍ରଶିଳ୍ପୀଙ୍କ ନାମ ଉଲ୍ଲେଖ କରାଯାଇନି କିମ୍ବା ଶହ ଶହ ଛବି ଛପାଯାଇନି ତା ସାଙ୍ଗରେ କେଉଁ କେଉଁ କାରଣରୁ ଆଧୁନିକ ଚିତ୍ରକଳାର ଧାରା କେଉଁ କେଉଁ ଦିଗରେ କିପରି ପ୍ରଭାବିତ ହୋଇଛି ସେ ସଂପର୍କରେ ଅନେକ ଘଟଣା ସମ୍ବନ୍ଧରେ ଆଲୋଚନା କରାଯାଇଛି ଓ ତଥ୍ୟ ପରିବେଷିତ ହୋଇଛି । ଓଡ଼ିଶା ବାହାରେ ରହି ଯେଉଁ ଓଡ଼ିଆ ଶିଳ୍ପୀମାନେ ସ୍ୱ ସ୍ୱ ଅବଦାନ ଦେଇଯାଇଛନ୍ତି ସେମାନଙ୍କ ସମ୍ବନ୍ଧରେ ମଧ୍ୟ ଆଲୋଚନା କରାଯାଇଛି ।

ଖଲ୍ଲିକୋଟ ସ୍କୁଲ ପ୍ରତିଷ୍ଠା ପରେ ଓଡ଼ିଶାରେ ଆଧୁନିକ ଚିତ୍ରକଳା ଆନ୍ଦୋଳନ ଧୀରେସୁସ୍ଥେ ଆଗେଇ ଚାଲିଥିବା ବେଳେ ୧୯୬୦ରେ ଭୁବନେଶ୍ୱରରେ ଲଳିତ କଳା ଏକାଡ଼େମୀର ପ୍ରତିଷ୍ଠା, ୧୯୬୨ରେ ଦିନନାଥ ପାଠୀ ଓଡ଼ିଶାରୁ ପ୍ରଥମ କରି ତାଙ୍କର 'Harvesting Songs' ମଡ଼ର୍ଣ୍ଣ ପେଣ୍ଟିଂ ପାଇଁ ଏକାଡ଼େମୀ ଅଫ୍ ଫାଇନ୍ ଆର୍ଟସ୍ କଲିକତାରୁ ପୁରସ୍କୃତ ହେବା, ସେଇ ୧୯୬୨ରେ ଓଡ଼ିଶା ଲଳିତ କଳା ଏକାଡେମୀଦ୍ୱାରା ଆୟୋଜିତ ରାଜ୍ୟସ୍ତରୀୟ ଚିତ୍ରକଳା ପ୍ରଦର୍ଶନୀରେ ଅଜିତ୍ କେଶରୀ ରାୟଙ୍କ ମଡ଼ର୍ଣ୍ଣ ପେଣ୍ଟିଂ ପୁରସ୍କୃତ ହେବା ଉଲ୍ଲେଖଯୋଗ୍ୟ ଘଟଣା । ଏହାପରେ ୧୯୬୯ ଓ୍ୱାର୍କିଂ ଆର୍ଟିଷ୍ଟ୍‌ସ ଆସୋସିଏସନ୍ ଗଠନ, ୧୯୮୪ରେ ଭୁବନେଶ୍ୱରରେ ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟ ଏବଂ ୧୯୮୮ରେ ରାଷ୍ଟ୍ରୀୟ ଲିଳିତ କଳା କେନ୍ଦ୍ର ପ୍ରତିଷ୍ଠା ଫଳରେ ଏହି କଳା ଆନ୍ଦୋଳନ ବେଗ ଧାରଣ କଲା । ଏ ସମସ୍ତ ତଥ୍ୟ ଏବଂ ତତ୍‌ସମ୍ବନ୍ଧୀୟ ଅନେକ ଫଟୋଚିତ୍ର ପୁସ୍ତକରେ ପ୍ରକାଶିତ ହୋଇଛି ।

ପୁସ୍ତକରେ ପ୍ରଥମ ଅଧ୍ୟାୟରେ ଡକ୍ଟର ଦିନନାଥ ପାଠୀ ଓଡ଼ିଶାର ଆଧୁନିକ ଚିତ୍ରକଳାର ଗୋଟି ଗୋଟି ଚିତ୍ରଶିଳ୍ପୀ, ସେମାନଙ୍କର ଚିତ୍ରଭାଷା, ଅନେକ ଘଟଣା, ଜଣେ

ଛାତ୍ର/ଚିତ୍ର ଶିଳ୍ପୀ/ଗବେଷକ/ସଂଗଠକ/ଶିକ୍ଷକ ଭାବରେ ନିଜର ଦୀର୍ଘ ଅନୁଭୂତି ଓ ଓଡ଼ିଶାର ଆଧୁନିକ ଚିତ୍ରକଳା ସହ ଦୀର୍ଘଦିନର ସଂପୃକ୍ତି ସଂପର୍କରେ କହିଛନ୍ତି । ଭୁବନେଶ୍ୱରରେ ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟ ପ୍ରତିଷ୍ଠା ଓ ଡଃ ପାଠୀଙ୍କର ୧୯୯୪ରେ ଦିଲ୍ଲୀରେ ଜାତୀୟ ଲଳିତ କଳା ଏକାଡେମୀର ସଚିବ ଭାବରେ ଦାୟିତ୍ୱ ଗ୍ରହଣ ଆଜିର ବହୁ ଯୁବଚିତ୍ରଶିଳ୍ପୀମାନଙ୍କ ଜାତୀୟ ସ୍ତରରେ ପ୍ରତିଷ୍ଠା ପାଇବାର ଦୁଇଟି ପ୍ରମୁଖ କାରଣ । ଡକ୍ଟର ପାଠୀଙ୍କ ଦିଲ୍ଲୀ ରହଣି ସମୟରେ ଦିଲ୍ଲୀରେ ତାଙ୍କ ବାସଗୃହରେ ଗଢ଼ିଉଠିଥିବା ପତିତପାବନ ମେସ୍‌ର କଥା ଅଛି । ଆଜି ସେ ମେସ୍‌ର ସମସ୍ତ ଅନ୍ତେବାସୀ ଚିତ୍ର ଜଗତରେ ବେଶ୍ ପ୍ରତିଷ୍ଠିତ । ଏହିପରି ଅନେକ ସ୍ମୃତି, ଅନେକ ସଂଘର୍ଷର କାହାଣୀ ପୁସ୍ତକରେ ସନ୍ନିବେଶିତ ହୋଇଛି ।

ଖଲ୍ଲିକୋଟ କଲେଜ ସଂପର୍କରେ ଅଲେଖ ଚରଣ ସାହୁ ୧୯୮୦ରୁ ୧୯୯୦ ସମୟ ଅବଧିର ତଥ୍ୟ ପରିବେଷଣ କରିଥିବା ବେଳେ ଦିଲ୍ଲୀପ କୁମାର ତ୍ରିପାଠୀ ବାହାରେ ରହୁଥିବା ଓଡ଼ିଶା ଶିଳ୍ପୀମାନଙ୍କର ସୃଜନ ପ୍ରକ୍ରିୟା ସଂପର୍କରେ ଆଲୋଚନା କରିଛନ୍ତି !

ପ୍ରଦୋଷ କୁମାର ମିଶ୍ର ଓଡ଼ିଶାର ଆଧୁନିକ ଚିତ୍ରକଳାରେ ଆଞ୍ଚଳିକ ଚିତ୍ରଭାଷା ସଂପର୍କରେ ଆଲୋଚନା କରିଛନ୍ତି । ସୌଭାଗ୍ୟ ପାଠୀ ତାଙ୍କର ଦୀର୍ଘ ଆଲୋଚନାରେ ମୁଖ୍ୟତଃ ଓଡ଼ିଆ ଯୁବ ଚିତ୍ରଶିଳ୍ପୀମାନଙ୍କ ସଂପର୍କରେ ବିଶଦ ଆଲୋଚନା କରିବା ସହ ଓଡ଼ିଆ ଯୁବଶିଳ୍ପୀଙ୍କର ସାମର୍ଥ୍ୟ, ସୀମା ଓ ସମ୍ଭାବନା ସଂପର୍କରେ କହିଛନ୍ତି ।

ଏକଦା ଖଲ୍ଲିକୋଟ ସ୍କୁଲ୍‌ରେ ଗ୍ରାଫ୍ କାଗଜରେ ଡ଼ିଜାଇନ୍ କରିବାକୁ ଗ୍ରାଫିକ୍ସ୍ କୁହାଯିବା ସମୟ ଏବେ ଆଉ ନାହିଁ । ଓଡ଼ିଶାର ଶିଳ୍ପୀମାନଙ୍କର ଆଜିର ଅବବୋଧ ବହୁ ଦିଗରୁ ପରିପୂର୍ଣ୍ଣ । ସେମାନଙ୍କ ଚିତ୍ରଭାଷା ଆଜି ବିଚିତ୍ରବର୍ଣ୍ଣା । ଦୀର୍ଘ ପଚାଶ ବର୍ଷର ଯାତ୍ରାରେ ଓଡ଼ିଶାର ଆଧୁନିକ ଚିତ୍ରକଳା ଆନ୍ତର୍ଜାତୀୟତା, ଜାତୀୟତା ଓ ଆଞ୍ଚଳିକତା ଭିତରେ କିପରି ଯୋଗସୂତ୍ର ରଖିଛି ତାହା ୨୨୩ ପୃଷ୍ଠାର ଏହି ବହିଟି ଆମୂଳଚୂଳ ନ ପଢ଼ିଲେ ବୁଝାପଡ଼ିବନି ।· ଇତିହାସ ଲେଖିବା ସହଜ ନୁହେଁ । ପୁଣି ଓଡ଼ିଆ ଆଧୁନିକ ଚିତ୍ରକଳାର ଇତିହାସ ! କିନ୍ତୁ ଯା ହେଉ ପରିଶେଷରେ ଅସଂଭବ ସଂଭବ ହୋଇପାରିଛି ।

ୱାର୍କିଂ ଆର୍ଟିଷ୍ଟ୍ ଆସୋସିଏସନ୍ ତରଫରୁ ଚନ୍ଦ୍ରଶେଖର ରାଓଙ୍କ ଷଷ୍ଠୀ ପୂର୍ତ୍ତି ଅବସରରେ ଏକ ମନୋଗ୍ରାଫ୍ ମଧ୍ୟ ପ୍ରକାଶିତ ହୋଇଛି । ପୂର୍ବରୁ ସଂସ୍ଥା ତରଫରୁ ଦିନନାଥ ପାଠୀ, ଶରତଚନ୍ଦ୍ର ଦେବ ଓ ଶିବ ପାଣିଗ୍ରାହୀଙ୍କ ସଂପର୍କରେ ମନୋଗ୍ରାଫ୍ ପ୍ରକାଶିତ ହୋଇଛି । ଚନ୍ଦ୍ରଶେଖର ରାଓଙ୍କ ଚିତ୍ରକଳା ଓ ତାଙ୍କ ଜୀବନଚର୍ଯ୍ୟାକୁ ନେଇ ପ୍ରକାଶିତ ମନୋଗ୍ରାଫ୍‌କୁ ଡକ୍ଟର ଦିନନାଥ ପାଠୀ ଓ ପ୍ରଦୋଷ ମିଶ୍ର ପ୍ରସ୍ତୁତ କରିଛନ୍ତି ।

ଶିଳ୍ପୀର ବ୍ୟକ୍ତିଗତ ଜୀବନ ସହ ତା'ର ଚିତ୍ରଭାଷାକୁ ମିଳେଇ ପଢ଼ିଲେ କଳାର ଅବବୋଧ ବଢ଼େ । ଦୃଶ୍ୟ ଓ ଦୃଶ୍ୟାନ୍ତର ଫରକ୍ ବୁଝାପଡ଼େ ।

ଓଡ଼ିଶାର ବିଶିଷ୍ଟ ଚିତ୍ରଶିଳ୍ପୀ 'ଓ୍ୱା'ର ଚେୟାରମ୍ୟାନ୍ ଚନ୍ଦ୍ରଶେଖର ରାଓ ଆଜି ଆମ ଗହଣରେ ଆଉ ନାହାନ୍ତି । ପଛରେ ଛାଡ଼ି ଯାଇଛନ୍ତି ତାଙ୍କ ହାତ ଅଙ୍କା ଛବି ଓ କାର୍ଯ୍ୟାବଳୀର ତାଲିକା । ସେ ପାଖରେ ନ ଥାଇବି ପାଖରେ ଅଛନ୍ତି । ତାଙ୍କର ରାଶି ରାଶି ଛବି ଓ କାର୍ଯ୍ୟାବଳୀର ତାଲିକା ଭିତରେ ଆମେ ତାଙ୍କ ସାନ୍ନିଧ ଅନୁଭବ କରିପାରିବା ।



## ଅସିତ୍ ମହାନ୍ତି

## ଚନ୍ଦ୍ର ରାଓ ଅଛନ୍ତି

'ମୁଁ ଖୁସି ଖୁସି ଚାଲିଯିବାକୁ ଚାହୁଁଚି, ମୋର କିଛି ଅବଶୋଷ ନାହିଁ !' ଜାନୁଆରୀ ତେର ତାରିଖ ଦିନ କଳିଙ୍ଗ ହସ୍‌ପିଟାଲଠାରେ ଭେଟିବା ବେଳେ ଏହା ଥିଲା ଚନ୍ଦ୍ରଶେଖର ରାଓଙ୍କର ଉକ୍ତି ।

ବନ୍ଧୁ ଚନ୍ଦ୍ରଭାନୁଙ୍କୁ ସାଙ୍ଗରେ ନେଇ ସେଦିନ ସନ୍ଧ୍ୟାରେ ମୁଁ ଯାଇଥିଲି କଳିଙ୍ଗ ହସ୍‌ପିଟାଲ୍ ତାଙ୍କ ଆତ୍ମଜୀବନୀ 'ଚନ୍ଦ୍ରାୟନ'ର ଲୋକାର୍ପଣ ସମାରୋହର ଆୟୋଜନ ସଂପର୍କରେ କଥା ହେବା ପାଇଁ । ଉଦ୍ଦେଶ୍ୟ, ସେ ତ ଅସୁସ୍ଥତା ହେତୁ ହସ୍‌ପିଟାଲରେ ଏବଂ ଅକ୍ସିଜେନ୍ ଲାଗିଥିବା ଅବସ୍ଥାରେ ସମାରୋହକୁ ଯାଇପାରିବା ସମ୍ଭବ ନୁହେଁ, ଏପରି ପରିସ୍ଥିତିରେ ଆମେ ସମାରୋହର ଆୟୋଜନ କରିବୁ ନା ନାହିଁ?

କିନ୍ତୁ ଏ ପ୍ରଶ୍ନର ଉତ୍ତରରେ ସେ ଯାହା କହିଲେ, ସେଥିରୁ ଯେ କେହି ତାଙ୍କର ଉଚ୍ଚତା ଓ ଅନନ୍ୟତା ଅନାୟାସରେ ଅନୁଭବ କରିପାରିବେ । ସେ କହିଥିଲେ, ମୁଁ ନିଜେ ସେଠି ରହିବା କ'ଣ ନିହାତି ଦରକାର ? 'ଚନ୍ଦ୍ରାୟନ' ମୋର ଆତ୍ମକଥା ! ମୋ' ବହି ଥିବା ଅର୍ଥ ତ ମୁଁ ଅଛି !

ଆଜି ଠିକ୍ ମାସକ ପରେ, ଫେବୃଆରୀ ତେର ତାରିଖ ଦିନ ତାଙ୍କର ଏକାଦଶାହ ସ୍ମରଣିକା ପାଇଁ ଏ ଲେଖା ଲେଖିଲା ବେଳେ ସେଇ କଥାଟି ହିଁ ମନେପଡୁଛି ସବୁଠୁ ବେଶି । ଆଉ ମନେ ବି ପଡ଼ିଯାଉଛି ତାଙ୍କ ସହ ଦୀର୍ଘ ପ୍ରାୟ ତେଇଶି ବର୍ଷର ସଂପର୍କ ।

୧୯୮୦ ମସିହାର କଥା । ସ୍ନାତକୋତ୍ତର ଶିକ୍ଷା ଶେଷ ପରେ ମୁଁ ସଦ୍ୟ ଯୋଗଦେଇଥାଏ 'ସମାବେଶ'ରେ । ମୁଖ୍ୟ ସଂପାଦକ ଅଖିଳ ମୋହନ ପଟ୍ଟନାୟକ, ସଂପାଦକ ଜଗଦୀଶ ପାଣି ଆଉ କଳା ସଂପାଦକ ଅସୀମ ବସୁ । ସେମାନଙ୍କ ମେଳରେ ଖୁବ୍ ସଂଯମତାର ସହ ମୁଁ ଯୋଗଦେଲି ପରିଚାଳନା ସଂପାଦକ ଭାବରେ । ଉତ୍ସାହର ସହ ଆରମ୍ଭ ହେଲା 'ସମାବେଶ'ର ନବବିନ୍ୟାସର ପର୍ବ । ସେତେବେଳକୁ ଅସୀମ ଦା' କେବଳ ବିଶେଷାଙ୍କଗୁଡ଼ିକର ପ୍ରଚ୍ଛଦ ଆଙ୍କୁଥାଆନ୍ତି ଏବଂ ଅନ୍ୟ ସାଧାରଣ ସଂଖ୍ୟାଗୁଡ଼ିକର ପ୍ରଚ୍ଛଦ ଛାପା ହେଉଥାଏ ପୁରୁଣା ବ୍ଲକ୍‌ରେ - ରଙ୍ଗ ବଦଳାଇ ।

ଜଗଦୀଶ ବାବୁ କହିଲେ, ଚନ୍ଦ୍ରରାଓଙ୍କୁ କୁହ କଭର୍ କରନ୍ତୁ । ସେତେବେଳକୁ ସେ ହସ୍ତଶିଳ୍ପ ନମୁନା କେନ୍ଦ୍ରରେ ଡିଜାଇନରା ତାଙ୍କ ସହିତ ଯୋଗାଯୋଗର ମୁଖ୍ୟ ଦାୟିତ୍ୱ ମତେ ନେବାକୁ ପଡ଼ିଲା ଏବଂ ସମାବେଶ ନୂଆ ରୂପରେ ଝଟକି ଉଠିଲା ।

ଜଣେ ଶିଳ୍ପୀର ସୃଜନଶୀଳତା ସହିତ ଅମାୟିକତା ଥିଲା ତାଙ୍କର ବ୍ୟକ୍ତିତ୍ୱର ଏକ ପରାକାଷ୍ଠା । ଏବଂ ତାହାହିଁ ଆମ ଦୁହିଁଙ୍କ ଭିତରେ ପ୍ରତିଷ୍ଠା କରିଥିଲା ଏକ ସ୍ଥାୟୀ ସଂପର୍କର ସେତୁ । ମୁଁ ସେଇ ସମାବେଶରେ ଥିବା ବେଳେ ହିଁ ପୁରୀ ଶ୍ରୀଜଗନ୍ନାଥ ମନ୍ଦିରର ସେତେବେଳର ସରକାରୀ ପ୍ରଶାସକ ରବୀନ୍ଦ୍ର ନାରାୟଣ ମିଶ୍ରଙ୍କ ପ୍ରତ୍ୟକ୍ଷ ଉତ୍ସାହରେ ନୂଆ ରୂପରେ ଆରମ୍ଭ ହେଲା ଶ୍ରୀଜଗନ୍ନାଥ ମନ୍ଦିର ତଥା ଜଗନ୍ନାଥ ସଂସ୍କୃତିର ମୁଖପତ୍ର 'ଶ୍ରୀମନ୍ଦିର' ଏବଂ କହିବା ଅନାବଶ୍ୟକ, ତାହାର ପ୍ରଚ୍ଛଦ ଠାରୁ ଆରମ୍ଭକରି ଭିତର ଚିତ୍ର ଓ ରେଖାଚିତ୍ର ସବୁ ପାଇଁ ମୋର ପ୍ରଥମ ପସନ୍ଦ ଥିଲେ ଚନ୍ଦ୍ରଶେଖର ରାଓ । ସ୍ୱଭାବତଃ ବିନୟୀ ଶ୍ରୀ ରାଓ କେବଳ ତାଙ୍କ ଆତ୍ମକଥା 'ଚନ୍ଦ୍ରାୟନ'ରେ ନୁହେଁ, ବିଭିନ୍ନ ସ୍ଥାନରେ ସେଥିପାଇଁ ବାରମ୍ବାର କୃତଜ୍ଞତା ବି ପ୍ରକାଶ କରିଛନ୍ତି। ଜାନୁଆରୀ ତେର ତାରିଖ ଦିନ କଳିଙ୍ଗ ହସପିଟାଲର ରୋଗ ଶଯ୍ୟାରେ ବି ତାହା ସ୍ୱୀକାର କରିବାର ସଂକ୍ଷିପ୍ତ ସୁଯୋଗ ବି ସେ ହାତଛଡ଼ା କରିନଥିଲେ ।

ପରେ, ୧୯୯୬ରେ 'ସମାବେଶ' ଓ କ୍ୱାଲିଟଇ ପ୍ରେସ୍ ଛାଡ଼ି ମୁଁ ଆସି ଯୋଗଦେଲି 'ପ୍ରଜାତନ୍ତ୍ର'ରେ ଏବଂ ପିଲାଙ୍କ ପତ୍ରିକା 'ମୀନାବଜାର'କୁ ନବକଳେବର ଦେବାର ପର୍ବ ଆରମ୍ଭ ହେଲା । ସେତେବେଳେ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କ ସମେତ 'ଦଶାବତାର' କାହାଣୀକୁ ନେଇ ବାରଟି ଓ 'ପୁରାଣର ଦେବଦେବୀ' କ୍ରମରେ ଷୋହଳଟି ପ୍ରଚ୍ଛଦ କାହାଣୀ ଲେଖିବାର ଯୋଜନା କରିଥିଲି ମୁଁ ଏବଂ ଅଠେଇଶିଟି ଯାକର ମଲାଟ ଚିତ୍ର ଆଙ୍କିବାର ଦାୟିତ୍ୱ ଆନନ୍ଦର ସହ ଗ୍ରହଣ କରିଥିଲେ ଶ୍ରୀ ରାଓ । ସେତେବେଳେ 'ଝଙ୍କାର'ର ପ୍ରଚ୍ଛଦକୁ ମଧ୍ୟ ନବକଳେବର ଦେବାର ଯେଉଁ ପର୍ବ ସଂପାଦକ ଶ୍ରୀ ମହତାବଙ୍କ ପ୍ରତ୍ୟକ୍ଷ ସମର୍ଥନ ଓ ଶିଳ୍ପୀବନ୍ଧୁ ଛନ୍ଦାଚରଣ ଆଚାର୍ଯ୍ୟଙ୍କ ସହଯୋଗରେ ମୁଁ

ଆରମ୍ଭ କରିଥିଲି, ତାହାର ବିଶେଷାଙ୍କଗୁଡ଼ିକର ପ୍ରଚ୍ଛଦ ମଧ୍ୟ ଆନନ୍ଦରେ ଆଙ୍କିଥିଲେ ଶ୍ରୀ ରାଓ ଏବଂ ଏସବୁର ସମର୍ଥନ ତାଙ୍କୁ ପରବର୍ତ୍ତୀ କାଳରେ, ୧୯୯୧ ରେ 'ବିଷୁବ କଳା ପୁରସ୍କାର' ପରି ସମ୍ମାନରେ ଭୂଷିତ କରିଥିଲା ।

ଏମିତି ଗଢ଼ିହୋଇଯାଇଥିଲା ଆମ ଦୁହିଁଙ୍କ ଭିତରେ ଏକ ଦୃଢ଼ ସଂପର୍କ। କଳାକ୍ଷେତ୍ରରେ ତାଙ୍କର ଭଲ, ମନ୍ଦ ସବୁର ଖବର ସେ ମୋତେ କେବେ ଦେବାକୁ ଭୁଲୁ ନଥିଲେ । ସେ କଳାକ୍ଷେତ୍ରରେ ପାଉଥିବା ପୁରସ୍କାରର କୌଣସି ବିବରଣୀ ମୋ ସଂଯୋଜନାରେ ପ୍ରକାଶିତ 'ପ୍ରଜାତନ୍ତ୍ର ସାପ୍ତାହିକୀ'ର କଳା ସଂସ୍କୃତି ପୃଷ୍ଠା ଅବଶ୍ୟ ମଣ୍ଡନ କରୁଥିଲା । ମୁଁ 'ପ୍ରଜାତନ୍ତ୍ର' ଛାଡ଼ି 'ସମ୍ବାଦ' ଓ ପରେ 'ଶତାବ୍ଦୀ'କୁ ଆସିବା ପରେ ତାଙ୍କ ସହିତ ଏପରି କୌଣସି ଦାପ୍ତରିକ ସଂପର୍କର ଅବକାଶ ନଥିଲେ ହେଁ ଆମର ସଂପର୍କ ଶିଥିଳ ହେବାର ଅବକାଶ ହିଁ ନଥିଲା ।

ଆମେ ଦୁହେଁ କଥା ହୋଇଥିଲୁ, ସେ ଦଶାବତାର ସହିତ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କୁ ନେଇ 'ମୀନାବଜାର' ପାଇଁ ଆଙ୍କିଥିବା ଚିତ୍ରଗୁଡ଼ିକୁ ମଠାକନା ଉପରେ ଆଉଥରେ ଆଙ୍କିବେ ନିଜ ଶୈଳୀରେ ଏବଂ ତାହାକୁ ନେଇ ମୁଁ ଲେଖିଥିବା ଦଶାବତାର କାହାଣୀର ଗୋଟିଏ ବହି ଛପାହେବ । ସେଇ ଚିତ୍ରଗୁଡ଼ିକୁ ଗୋଟିଏ ପ୍ୟାନେଲ୍‌ରେ ବନ୍ଧେଇ କରି 'ଶତାବ୍ଦୀ' ଅଫିସ୍‌ରେ ରଖାହେବ ଏବଂ ସେଇ ବାରଟି ଚିତ୍ରକୁ ନେଇ ଗୋଟିଏ ବାରପୃଷ୍ଠିଆ  ଡେସ୍କ କ୍ୟାଲେଣ୍ଡର ମଧ୍ୟ 'ଶତାବ୍ଦୀ' ପକ୍ଷରୁ ପ୍ରସ୍ତୁତ କରାଯିବ । ସେ ଖୁବ୍ ଆଗ୍ରହର ସହ ସମ୍ମତି ବି ହୋଇଥିଲେ ସେଥିରେ ଏବଂ ଦିନେ 'ଶତାବ୍ଦୀ'କୁ ଆସି 'ମୀନାବଜାର'ର ସେଇ ପ୍ରଚ୍ଛଦ ଚିତ୍ରଗୁଡ଼ିକୁ ବି ସଂଗ୍ରହ କରିନେଇ ଯାଇଥିଲେ ମୋ'ଠୁ । କିନ୍ତୁ କ୍ରୁର କାଳ ତାହା କରାଇ ଦେଲାନାହିଁ । ଜାନୁଆରୀ ତେର ତାରିଖ ଦିନ କଳିଙ୍ଗ ହସପିଟାଲରେ ତାଙ୍କ ସହ କଥାହେବା ବେଳେ, ମୁଁ ଖୁସି ଖୁସି ଚାଲିଯିବାକୁ ଚାହୁଁଚି, ମୋର କିଛି ଅବଶୋଷ ନାହିଁ କହିବା ସହିତ ...ଖାଲି ଆଉ କିଛି ଚିତ୍ର କରିଥାନ୍ତି ! ବୋଲି ସେ କହିବା ବେଳେ ମୋର ସେଇ କଥା ହିଁ ମନେପଡ଼ି ଆଖି ଛଳଛଳ ହୋଇଯାଇଥିଲା ।

ଜାନୁଆରୀ ୧୫ ତାରିଖ, ପବିତ୍ର ମକର ସଂକ୍ରାନ୍ତି ଓ ପୋଙ୍ଗଲ ଅବସରରେ ଭୁବନେଶ୍ୱର ରାଷ୍ଟ୍ରୀୟ ଲଳିତ କଳା କେନ୍ଦ୍ରଠାରେ ଲୋକାର୍ପିତ ହେଲା 'ଶତାବ୍ଦୀ ମିଡ଼ିଆ' ଦ୍ୱାରା ପ୍ରକାଶିତ ତାଙ୍କର ଆତ୍ମକଥା 'ଚନ୍ଦ୍ରାୟନ' । ସେ ଲେଖା ଲେଖାହେବାର ଆରମ୍ଭ ବେଳୁହିଁ ତାହାର ଛାପା ଦାୟିତ୍ୱ ମତେ ଦେବାପାଇଁ ସେ ନିଷ୍ପତ୍ତି କରିଥିଲେ ଏବଂ ଶେଷ ପର୍ଯ୍ୟନ୍ତ ସେଥିରେ ଦୃଢ଼ ରହିଥିଲେ । ସେ ଥିଲେ ଉଭୟ ଓଡ଼ିଆ ଓ ତେଲଗୁ । ତେଣୁ

ମକର ସଂକ୍ରାନ୍ତି ଓ ପୋଙ୍ଗଲ ଅବସରରେ 'ଚନ୍ଦ୍ରାୟନ'ର ଲୋକାର୍ପଣ କରିବା ପାଇଁ ତାଙ୍କର ନିଷ୍ପତ୍ତି ଥିଲା ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

ସେଦିନ ହସପିଟାଲର ଶଯ୍ୟାରେ ବସି 'ଚନ୍ଦ୍ରାୟନ'ର ଲୋକାର୍ପଣ ସମାରୋହ ସଂପର୍କରେ ଯୋଜନା କଲାବେଳେ ସେ ଆଉ ଗୋଟିଏ କଥା ମଧ୍ୟ କହିଥିଲେ । କହିଥିଲେ, ପ୍ରତିବର୍ଷ ପୋଙ୍ଗଲରେ ପିତୃପୁରୁଷଙ୍କ ପାଇଁ ମୁଁ ପୂଜାରେ ବସେ, ବାରପତ୍ର ପକାଏ । ଏଥର ପୋଙ୍ଗଲରେ ତ ମୁଁ ଏଠି । ଅକ୍ସିଜେନ୍ ଲାଗିଛି । ଏଥିରେ ଏଇ 'ଚନ୍ଦ୍ରାୟନ' ହିଁ ପିତୃପୁରୁଷଙ୍କ ପାଇଁ ମୋର ବାରପତ୍ର ।

ଆଜି ତାଙ୍କର ପ୍ରୟାଣର ଏଗାରଦିନ । କାଲିକି ପଡ଼ିବ ତାଙ୍କପାଇଁ ବାରପତ୍ର । ତା'ପରେ ଅନେକଙ୍କ ପାଇଁ ସେ ହୋଇଯିବେ ସ୍ମୃତି । ଅନେକଙ୍କ ପାଇଁ ବିସ୍ମୃତି ବି । କିନ୍ତୁ ମୋର ବିଶ୍ୱାସ 'ଚନ୍ଦ୍ରାୟନ' ତାଙ୍କୁ କେବେ ବିସ୍ମୃତ ହେବାକୁ ଦେବ ନାହିଁ । କାରଣ ତାଙ୍କରି ଭାଷାରେ କହିଲେ, ମୁଁ ରହିବା କ'ଣ ନିହାତି ଦରକାର? 'ଚନ୍ଦ୍ରାୟନ' ଥିବା ଅର୍ଥ ତ ମୁଁ ଅଛି !



## ନୃସିଂହ ଚରଣ ସାହୁ

## ଶୁକ୍ଳପକ୍ଷରେ ଅମାରାତି

କେନ୍ଦୁଝର ଓ ମୟୁରଭଞ୍ଜ ଦୁଇ ଆଦିବାସୀ ଅଧ୍ୟୁଷିତ ଜିଲ୍ଲାର ସଂଗମ ସ୍ଥଳ କପୁଣ୍ଡି କୃଷି ପ୍ରଦର୍ଶନକ୍ଷେତ୍ର । ସେହିଠାରେ ଦୁଇଶହ ପାଖାପାଖି ଅଧାରୁ ପାଠ ଛାଡ଼ିଥିବା ହତାଶ କିଶୋର କିଶୋରୀଙ୍କ ମନରେ ନୂଆ ସ୍ୱପ୍ନ ଓ ସାହସ ଭରିଦେବା ପାଇଁ ସି.ୱାଇ.ଏସ୍.ଡ଼ି. ପକ୍ଷରୁ ଏକ ସାତ ଦିନିଆ ଶିବିର ଅନୁଷ୍ଠିତ ହୋଇଥାଏ, ଫେବୃଆରୀ ପହିଲାରୁ ସାତ ତାରିଖ ପର୍ଯ୍ୟନ୍ତ। ଅନେକ ଦିନ ପରେ ଆନୁଷ୍ଠାନିକଭାବେ ଏପରି ଏକ 'କର୍ମଶାଳା' ବା 'ଆନନ୍ଦମେଳା'ରେ ଯୋଗ ଦେବାର ସୁଯୋଗ ପାଇ ମୁଁ ସେଠାରେ ଥାଏ । ୫ ତାରିଖ ସଂଧ୍ୟାରେ ଖଇରାଗଡ଼ କଳା ମହାବିଦ୍ୟାଳୟର ଛଅଜଣ ଛାତ୍ରଛାତ୍ରୀ ପହଞ୍ଚିଗଲେ ଆଦିବାସୀ ପିଲାମାନଙ୍କ କଳା ପ୍ରତିଭା ପର୍ଯ୍ୟବେକ୍ଷଣ ଓ ବିକାଶ ନିମନ୍ତେ । ସେଇଠି କଥା ପ୍ରସଙ୍ଗରେ ମୁଁ ବିଶିଷ୍ଟ ଚିତ୍ରଶିଳ୍ପୀ ଚନ୍ଦ୍ରଶେଖରବାବୁଙ୍କ ସହ ମୋର ଘନିଷ୍ଠତା । ଗତବର୍ଷ ଏହିପରି ଖଇରାଗଡ଼ ଛାତ୍ରଛାତ୍ରୀମାନେ ରାଷ୍ଟ୍ରୀୟ ଲଳିତକଳା କେନ୍ଦ୍ରରେ ଆୟୋଜନ କରିଥିବା ପ୍ରଦର୍ଶନୀକୁ ମୋତେ ଡ଼ାକି ନେଇଥିବା କଥା ପ୍ରକାଶ କରି ସେମାନଙ୍କ ସହ ଅନ୍ତରଙ୍ଗତା ସୃଷ୍ଟି କରିଥାଏ । ହଠାତ୍ ସେମାନେ ମୋତେ ଦୁଃସମ୍ବାଦ ଦେଲେ ଚନ୍ଦ୍ରଶେଖରବାବୁ ଆଉ ନାହାନ୍ତି । ଗତକାଲି ତାଙ୍କର ଜୀବନ ଲୀଳାର

ଅବସାନ ହୋଇଯାଇଛି । ସତେ ଯେପରି ଶୁକ୍ଳପକ୍ଷରେ ଆମାରାତି ଘୋଟିଗଲା । ଆଖିରୁ ଦି'ଧାର ଅଶ୍ରୁ ଗଡ଼ିପଡ଼ିଲା ।

ପ୍ରାୟ ମାସେ ତଳେ ଯାଇଥିଲି, ସେ ଖୁବ୍ ଅସୁସ୍ଥ ଥିଲେ, ତଥାପି ମନ କହୁଥିଲା ସେ ଏତେ ଶୀଘ୍ର ଯିବେ ନାହିଁ । କାରଣ ତାଙ୍କୁ ଷାଠିଏ ବର୍ଷ ପୂର୍ଣ୍ଣ ହେବା ବେଳେ ଓ୍ୱାର୍କିଙ୍ଗ ଆର୍ଟିଷ୍ଟସ୍ ଆସୋସିଏସନ୍ ପକ୍ଷରୁ ତାଙ୍କ ଜୀବନୀ ଓ କୃତି ସଂପର୍କରେ ଯେଉଁ ସଚିତ୍ର ମନୋଗ୍ରାଫ୍ ପ୍ରକାଶ ପାଇଥିଲା, ସେଥିରେ ତୂଳୀ ଓ କାଳି ଉଭୟ କ୍ଷେତ୍ରରେ ସିଦ୍ଧିଲାଭ କରିଥିବା ଓଡ଼ିଶାର ଅନ୍ୟତମ ବିଶିଷ୍ଟ କଳାକାର ଡକ୍ଟର ଦିନନାଥ ପାଠୀ ଲେଖିଥିଲେ 'ଚନ୍ଦ୍ରଶେଖରବାବୁଙ୍କ ସପ୍ତଦଶ ବର୍ଷ ପୂର୍ତ୍ତି ଉପଲକ୍ଷେ ଯେଉଁ ମନୋଗ୍ରାଫ୍ ପ୍ରକାଶ ପାଇବ ତାହା ତାଙ୍କର ଆହୁରି ବହୁ କୃତିର ଆଲୋଚନାରେ ବୃହଦାକାର ହେବ । ପରିଣତ ବୟସରେ ସେ ନିଜ ବାସଗୃହରେ ଛୋଟ ଛୋଟ ପିଲାମାନଙ୍କ କଳା ପ୍ରତିଭାର ବିକାଶ ପାଇଁ ଯେଉଁ କ୍ରିଏଟିଭ୍ ଆର୍ଟ ସେଣ୍ଟର କରିଛନ୍ତି ତା'ର ଫଳଶ୍ରୁତି ସଂପର୍କରେ ମଧ୍ୟ ସେଥିରେ ଉଲ୍ଲେଖ ରହିବ ସେତେବେଳକୁ ତା'ର ଦାୟିତ୍ୱ ବହନ କରିଥିବ ତାଙ୍କର କନିଷ୍ଠ ସୁପୁତ୍ର ଗିରି ।'

ଚନ୍ଦ୍ରଶେଖରବାବୁଙ୍କ ଷଷ୍ଠୀ ପୂର୍ତ୍ତି ଉତ୍ସବକୁ ମୁଁ ଯାଇଥିଲି । ପୂର୍ବରୁ ମୋ ହାତରେ ପ୍ରଜାତନ୍ତ୍ରକୁ 'ଝଙ୍କାର' ପାଇଁ କେତୋଟି ପ୍ରଚ୍ଛଦଚିତ୍ର ପଠାଇଥିଲେ । ସେଦିନ ତାଙ୍କର 'ଜୀବନ ଓ କୃତି' ଉପରେ ରଚିତ ଇଂରେଜୀ ମନୋଗ୍ରାଫ୍‌ଟି ପଢ଼ି ମୁଁ ବିଶେଷ କିଛି ବୁଝିପାରିନଥିଲି । ଏକାନ୍ତରେ ଡ଼ାକି ନେଇ କହିଲେ ଇଏ ହେଲାତ ଦୁଇଜଣ ଅତିଥିଙ୍କର ଗୃହକର୍ତ୍ତାଙ୍କୁ ପ୍ରଶଂସା । କିନ୍ତୁ ଆପଣଙ୍କ ଜୀବନ ସଂଗ୍ରାମ ଓ ଅଭ୍ୟୁଦୟର ଅକୁହା କାହାଣୀ ଆମକୁ ତଥା ଉତ୍ତର ପୀଢ଼ିକୁ ଶୁଣିବାକୁ ମିଳିବ ନାହିଁ? ସେତ ଅତ୍ୟନ୍ତ ବିନୟୀ ଲୋକ । କହିଲେ, ମୁଁ ସିନା ତୂଳୀଚାଳକ, କଲମ କ'ଣ ମୋର ବୋଲ ମାନିବ ? ମୁଁ ପ୍ରତିଶ୍ରୁତି ଦେଲି, ଆପଣ ଲେଖିବେ, ତାକୁ ଛାପିବା ପୂର୍ବରୁ ଦେଖିଦେବା ମୋର କାମ ହେବ । ସେଇଠାରେ ମଞ୍ଜି ପଡ଼ିଲା 'ଚନ୍ଦ୍ରାୟନ'ର, ମଝିରେ ମଝିରେ ଘରକୁ ଆସନ୍ତି । ମୁଁ ମଧ୍ୟ ତାଙ୍କ ଘରକୁ ଯାଏ, ଲେଖା ପଢ଼ାନ୍ତି । ସଂଶୋଧନ କରିବାକୁ କହନ୍ତି । ମୁଁ 'ବେଶ୍ ବଢ଼ିଆ' ହୋଇଛି କହି ସଂଶୋଧନ କରିବାର ଧୃଷ୍ଟତା ଏଡ଼େଇଯାଏ ।

ଲେଖା ଶେଷ ହେଲା । ଡ଼ି.ଟି.ପି କାମ କରାଇଦେବାକୁ ମୋତେ ଅନୁରୋଧ କଲେ, ମୋର ଜଣେ ନାତିକୁ ପଠାଇଲି । ବାରମ୍ବାର ତାଗିଦ କଲି ଶୀଘ୍ର ଯେପରି ଡ଼ି.ଟି.ପି. କାମ ଶେଷ ହୁଏ । ନାତି ମୋତେ ପାଲଟା ଅଭିଯୋଗ କରେ - ଅଜା, ସାର୍ ବାରମ୍ବାର ଡ଼ି.ଟି.ପି. ହେବା ପରେ ସଂଶୋଧନ କରୁଛନ୍ତି । ମୁଁ ତାଙ୍କୁ ବୁଝାଏ, କଳାକାରମାନେ ନିଜ କାମରେ କେବେ ସନ୍ତୁଷ୍ଟ ହୁଅନ୍ତି ନାହିଁ । ତାକୁ ଅଧିକରୁ ଅଧିକ

ଭଲ କରିବାକୁ ଇଚ୍ଛା କରିଥାଆନ୍ତି । ଅନ୍ୟମାନେ ଅସନ୍ତୁଷ୍ଟ ହେବେ ବୋଲି ମୁଁ ତୋତେ ସେ ଦାୟିତ୍ୱ ଦେଇଛି। ତୁ ଜାଣିବୁ, ସେଇଟା ତୋର ଅଜା ଲେଖିଛନ୍ତି । ଶେଷରେ ସେ କାର୍ଯ୍ୟର ମୁଣ୍ଡି ମରିଲା 'ଶତାବ୍ଦୀ' ପ୍ରକାଶନ ମାଧ୍ୟମରେ । ଶେଷ ପର୍ଯ୍ୟାୟରେ ଆମେ ଉଭୟ ଆଉ ଟିକେ 'ଚନ୍ଦ୍ରାୟନ'କୁ ବାଗେଇ ନେବାର ଇଚ୍ଛା ହଠାତ୍ ଅସୁସ୍ଥାବସ୍ଥା ହେତୁ ଅପୂର୍ଣ୍ଣ ରହିଗଲା । ଘୋର ଅସୁସ୍ଥାବସ୍ଥାରେ 'ଚନ୍ଦ୍ରାୟନ'ର ଆତ୍ମପ୍ରକାଶ ହେଲା ।

ବହୁବାର ଅନୁରୋଧ କରିଥିଲି, ପ୍ରଜାତନ୍ତ୍ର ସାପ୍ତାହିକୀ ନିମନ୍ତେ ତାଙ୍କର କଳା ପ୍ରତିଭାର ଝଲକ ପ୍ରକାଶ ପାଇଁ ଏକ ସାକ୍ଷାତ୍‌କାର ନେବାକୁ । କିନ୍ତୁ ଘରକୁ ଗଲେ ନାନା ଘରୋଇ କଥା ଆଲୋଚନାରେ ଚା, ଜଳଖିଆ ଖୁଆଇ ସେ ପ୍ରସଙ୍ଗ ଏଡ଼ାଇଯାଆନ୍ତି । ତାଙ୍କର ବନ୍ଧୁବତ୍ସଳତା ପାଖରେ ମୋର ନିବେଦନ ହଜିଯାଏ । ଶେଷରେ ମୋର ଅନୁଜ ପ୍ରତିମ ମନୋଜ କୁମାରଙ୍କ ମାଧ୍ୟମରେ ତାହା ପ୍ରଜାତନ୍ତ୍ରରେ ପ୍ରକାଶ ପାଇଲା । ପୁଣି ସେ ଘରକୁ ଆସି କହିଲେ, 'ମୁଁ ଜାଣେ ଏସବୁ ଆପଣଙ୍କ କାରସାଦି ।

ଓଡ଼ିଶାର ପାରମ୍ପରିକ ଚିତ୍ରକଳାକୁ ଆଧୁନିକତାର ସାମାନ୍ୟ ଛିଟା ଦେଇ ସେ ସମଗ୍ର ବିଶ୍ୱ ଦରବାରରେ ପ୍ରଚାରିତ, ପ୍ରସାରିତ ଓ ସମ୍ମାନିତ କରିଛନ୍ତି । ପ୍ରାଚୀନ ପୋଥି ଓ ପଟ୍ଟଚିତ୍ର ଥିଲା ତାଙ୍କ ପ୍ରେରଣାର ଉତ୍ସ । କେବଳ ଭାରତର ବଡ଼ ବଡ଼ ସହର ତଥା କଳା ପୀଠମାନଙ୍କରେ ନୁହେଁ, ବିଦେଶର ବହୁ ପ୍ରସିଦ୍ଧ ସହରରେ ସେ ଓଡ଼ିଶୀ ଚିତ୍ରକଳାକୁ ନେଇ ଆଦୃତ କରାଇଛନ୍ତି । ସ୍ୱର୍ଗତ ସଂଯୁକ୍ତା ପାଣିଗ୍ରାହୀ ଓ ଗୁରୁ କେଳୁଚରଣ ମହାପାତ୍ର ଯେପରି ଓଡ଼ିଶୀ ନୃତ୍ୟର ଆଦର ବଢ଼ାଇଛନ୍ତି, ସେ ସେହିଭଳି ମହାନ୍ ସାଧନା କରିଛନ୍ତି ଏବଂ ଦୀର୍ଘ ଚାଳିଶ ବର୍ଷ ଧରି ଅନେକ କାଳଜୟୀକୃତି ସୃଷ୍ଟି କରିଯାଇଛନ୍ତି ।

ଚନ୍ଦ୍ରବାବୁ ନୀରବ ସାଧକ ଥିଲେ, ପ୍ରଚାର ବିମୁଖ ଥିଲେ । ତଥାପି ତାଙ୍କର ପ୍ରତିଭା ଲୁଚି ରହିପାରିନାହିଁ । ଜୟଦେବ ଅମରକୃତି ଗୀତଗୋବିନ୍ଦକୁ ଚିତ୍ରରୂପ ଦେଇ ସେ ଏକ ଅମ୍ଳାନ୍ କୀର୍ତ୍ତି ସ୍ଥାପନ କରିଯାଇଛନ୍ତି । ଓଡ଼ିଶା ତଥା ଭାରତର ବହୁ ବିଶିଷ୍ଟ କଳାନୁଷ୍ଠାନଦ୍ୱାର ସେ ସମ୍ମାନିତ ଓ ପୁରସ୍କୃତ ହୋଇଛନ୍ତି । କିନ୍ତୁ ଏସବୁ ଅପେକ୍ଷା ତାଙ୍କର ତୂଳୀ ଯେ ଶେଷ ପର୍ଯ୍ୟନ୍ତ ଚଳଚଞ୍ଚଳ ଥିଲା, ଏହାହିଁ ଥିଲା ତାଙ୍କ ପାଇଁ ସବୁଠାରୁ ଅଧିକ ଆଶା ଓ ଆନନ୍ଦଦାୟକ । ଚନ୍ଦ୍ରବାବୁ ଅସଂଖ୍ୟ ଛାତ୍ରଛାତ୍ରୀଙ୍କ ଭିତରେ କଳା ପ୍ରତିଭାର ବିକାଶ ପାଇଁ ଉଦ୍ୟମ କରି ଯାଇଛନ୍ତି । ସେହିମାନଙ୍କ ଭିତରୁ ଅନେକ 'ନୀରବ ସାଧନା'କୁ ଜୀବନର ବ୍ରତ କଲେ । ଚନ୍ଦ୍ରବାବୁ ଅସମୟ ଅବର୍ତ୍ତମାନର ହଠାତ୍ ଶୁକ୍ଳପକ୍ଷରେ ଯେଉଁ ଅମାରାତିର ଅନ୍ଧକାର ଘୋଟି ଯାଇଛି, ତାହାର ଅବସାନ ହେବ । ପୁଣି ଚନ୍ଦ୍ରାଲୋକର ଉଜ୍ଜ୍ୱଳ କିରଣ ପ୍ରତିଭାତ ହେବ ଓ ଓଡ଼ିଶାର କଳାର ଆଦର ବୃଦ୍ଧିରେ ଚନ୍ଦ୍ରବାବୁଙ୍କୁ ସମସ୍ତେ ମନେପକାଉଥିବେ ।

# ଦେବରାଜ ସାହୁ

## କିଛି ଅଭୁଲା ସ୍ମୃତି

ଆଗକୁ ଯିବି କି ପଛକୁ ଯିବି, ଆର୍ଟ କଲେଜ କୋଉଠି ଦିଶୁନି । କାହାକୁ କିଛି ପଚାରିବାକୁ ଭୟ ଲାଗୁଥିଲା। ରାସ୍ତାକଡ଼ରେ ଗୋଟେ ପିଲା, ବାଳ କୁଞ୍ଚି କୁଞ୍ଚିକା ଠିଆ ହୋଇଥିଲା। ତା ପାଖକୁ ଗଲି। ଟିକେ ଠିଆ ହୋଇ ପଚାରିଲି ଆଚ୍ଛା ଏଠି ଖଲ୍ଲିକୋଟ ଆର୍ଟ କଲେଜଟା କେଉଁଠି କହିପାରିବ କି । ସେ ପିଲାଟା କହିଲା ତୁମେ କ'ଣ କାଲି ଆର୍ଟ କଲେଜରେ ଇଣ୍ଟରଭ୍ୟୁ ଦେବାକୁ ଆସିଛ । ମୁଁ ହଁ କଲି ଏବଂ ପୁଣି ପଚାରିଲି ତୁମେ କେମିତି ଜାଣିଲ ? ସେ କହିଲା ତୁମ ଚାଲି ଚଳଣରୁ ମୁଁ ଏଠୁ ମାର୍କ କରୁଥିଲି ତୁମେ ନିଶ୍ଚୟ ଇଣ୍ଟରଭ୍ୟୁ ପାଇଁ ଆସିଛ । ମୁଁ କହିଲି ତୁମେ କ'ଣ ଏଇ ଖଲ୍ଲିକୋଟର ପିଲା ? ସେ କହିଲା ନାଇଁମ ମୁଁ ମଧ ଇଣ୍ଟରଭ୍ୟୁ ପାଇଁ ଆସିଛି । ମୋ ଘର ମଥୁରା । କ'ଣ ତୁମେ ଏତେ ବାଟରୁ ଆସିଛ ? ଯେଉଁ ମଥୁରାରେ କୃଷ୍ଣ ମନ୍ଦିର ଅଛି ସେଇ ମଥୁରତ ? ସେ ହସି ହସି କହିଲା ସେଇ ମଥୁରା ନୁହେଁ ଏଇ ପାଖରେ ଆଉ ଗୋଟେ ମଥୁରା ଗାଁ ଅଛି । ସେ ମୋତେ ମୋ ନାଁ ପଚାରିଲା ମୁଁ କହିଲି ମୋ ନାଁ ଶ୍ରୀ ଦେବରାଜ ସାହୁ । ମୁଁ ପଚାରିଲି ତୁମ ନାଁ କଣ ? ସେ କହିଲା ମୋ ନାଁ ଏନ୍. ଚନ୍ଦ୍ରଶେଖର ରାଓ । ମୁଁ କହିଲି ତୁମେ କଣ ଲେଲୁଗୁ । ସେ ହଁ ମାରିଲା । କାହିଁ ତେଲୁଗୁ ଭଳି ଲାଗୁନ ତ । ଦୁହେଁ ହସା ହସି ହେଲୁ । ତାପରେ ସେ ମୋ ହାତଧରି କହିଲା ଆସ ଆମର ଜଣେ ଚିହ୍ନାଲୋକ ଏଠାରେ ଅଛନ୍ତି । ତାଙ୍କ ଘରେ ଆଜି ରାତିଟା ରହିଯିବା । ସେ ଯାହା ଘରକୁ ମୋତେ ଡ଼ାକି ନେଲେ ମୁଁ ଗାଁରୁ ନେଇଥିବା ଚିଠି ଏବଂ ଆଡ୍ରେସ ତାଙ୍କୁ ଦେଖେଇବାରେ ସେ କହିଲେ ଏଚିଠି ମୋ ପାଖକୁ ଲେଖାଅଛି । ଖଣ୍ଡେ ସପ ଦେଲେ ବସିବା ପାଇଁ । ଦୁହେଁ ଯାକ ଟିକେ ଛାଡ଼ି ଛାଡ଼ି ବସିଲୁ । ସେ ଆମକୁ ବରା ଆଳୁ ବଣ୍ଡା ଆଣି ଖାଇବାକୁ ଦେଲେ । ଦୁହେଁଯାକ ଖାଇଲୁ । ପାଣି ପିଇ କିଛି ସମୟ ଚୁପ୍‌ଚାପ୍ ବସିଲୁ । ତା'ପରେ ଚନ୍ଦ୍ର କହିଲେ ଚାଲ ଟିକେ ବଜାର ଆଡ଼େ ବୁଲି ଆସିବ । ବଗିଚାରେ ବୁଲି ବୁଲି ଜଗନ୍ନାଥ ମନ୍ଦିର ଆଡ଼େ ଗଲୁ । ସେତବେଳକୁ ସନ୍ଧ୍ୟା ଆଳତି ଚାଲିଥାଏ, ଦୁହେଁ ମିଶି ମୁଣ୍ଡିଆ ମାରିଲୁ । ଠାକୁର ଆମକୁ ସାହା ହୁଅ। କାଲି ଇଣ୍ଟରଭ୍ୟୁରେ ଯେପରି ଦୁଇଜଣ ଯାକ ପାସ୍ କରିବୁ ।

ତାପରେ ବଜାର ସାହିକୁ ଫେରି ଆସିଲୁ । ସଂଧ୍ୟା ୮ଟାରେ ବଜାର ଶୁନ୍‌ଶାନ୍ ହୋଟେଲକୁ ଖାଇବାକୁ ଗଲୁ । ହୋଟେଲ ବାଲା କହିଲା ବାବୁ ଆମ ହୋଟେଲ୍‌ରେ ଖାଇଲେ ମାସିଆ ୨୨ ଟଙ୍କା ପଡ଼ିବ । ମନରେ ଭାବୁଥାଏ ଇମିତି ରାଗ ଖାଇଲେ

ରୋଗ ବାହାରି ପଡ଼ିବା ଖାଇସାରିଲୁ ମୁଁ ପଇସା ବାହାର କଲି ଦୁଇ ଜଣଙ୍କ ପାଇଁ । କିନ୍ତୁ ଚନ୍ଦ୍ରବାବୁ କହିଲେ ଏଇଟା ଆମ ଜିଲ୍ଲା । ତୁମେ ଆମର ଅତିଥି ଭଳି କହି ଦୁଇ ଜଣଙ୍କର ଖାଇବା ଖର୍ଚ୍ଚ ଦେଇଦେଲେ । ତାପରେ ରାତିରେ ରହିବା ଜାଗାକୁ ଫେରି ଆସିଲୁ । ଖରାଦିନ ତାଙ୍କ ଘର ଆଗରେ ଗୋଟେ ଚାନ୍ଦିନି । ଜହ୍ନରାତି, ପବନ ସୁରୁ ସୁରୁ ହୋଇ ବହୁଥାଏ । ଯିଏ ଯୁଆଡ଼େ ଶୋଇ ପଡ଼ିଲେଣି। ପଟି ଖଣ୍ଡେ ପାରି ଦୁଇ ଜଣ ଯାକ ବସି ଗପ ସପ ଆରମ୍ଭ କରିଦେଲୁ । ତୁମେ କେତେ ଭାଇ ଭଉଣୀ, ତୁମେ ବଡ଼ ନା ସାନ, ବାପା କଣ କରନ୍ତି ଇତ୍ୟାଦି ଇତ୍ୟାଦି । ତାପରେ ତୁମକୁ କଣ ଭଲ ଲାଗେ ? କଣ ଖାଇବାକୁ ଭଲ ଲାଗେ ? ତୁମର ସାଙ୍ଗମାନେ କେମିତି ? ତୁମର ଡ୍ରଇଁଂରେ କେତେ ନମ୍ବର ଆସୁଥିଲା ? ଡ୍ରଇଁଂ ବ୍ୟତୀତ ତୁମେ କଣ ମାଟି କଣ୍ଢେଇ, ଗଣେଶ, ସରସ୍ୱତୀ ମୂର୍ତ୍ତୀ କରିପାର ? ସବୁର ଉତ୍ତର ଦେଇ ଚାଲିଲି । ତାପରେ ମୁଁ ପଚାରିଲି ତୁମକୁ ଝୋଟି ଦେଇ ଆସେ? ଗୀତ ଗାଇ ଆସେ ? କେବେ ସ୍କୁଲର ଭେରାଇଟି୍ ସୋରେ ଭାଗ ନେଇଛ ? କେବେ ସ୍କୁଲର ବାର୍ଷିକ ଉତ୍ସବରେ ନାଚିଛ ? ଇତ୍ୟାଦି ଇତ୍ୟାଦି । ସେ ଯେଉଁ ସବୁ ଉତ୍ତର ଦେଲେ ମୁଁ ମନେ ମନେ ଭାବିଲି ଏ ପିଲାଟାର ଯୋଉ ଯୋଉ ଗୁଣ ଅଛି ମୋର ମଧ୍ୟ ସେଇ ସେଇ ଗୁଣ ଅଛି । ବୋଧହୁଏ ପିଲାଟି ମୋ ସାଥିରେ ଭଲ ଭାବରେ ମିଶିପାରିବ । ଏମିତି କଥା ହେଉ ହେଉ ରାତି ପ୍ରାୟ ୧୧ଟା ହୋଇଯାଇଥିଲା । କ'ଣ ନିଦ ଲାଗୁନି । ନା, ତୁମ ସାଥିରେ କଥା ହେବାକୁ ଭାରି ଭଲ ଲାଗୁଛି । ହେଲେ କଣ ହେବ କାଲି ସକାଳୁ ବେଗେ ଉଠିଲେ ଇଣ୍ଟରଭ୍ୟୁକୁ ଯିବା । ତାପରେ ଶୋଇ ପଡ଼ିଲୁ । ଟିକେ ଛାଡ଼ି ଛାଡ଼ି ଖରାଦିନ ଯୋଗୁଁ ମୁଁ ଚଦର ନେଇନଥାଏ । ସେ ଚଦର, ପାଛୁଡ଼ି ଧରି ଆସିଥାନ୍ତି । ଶୀତ ତ ନଥାଏ । ଖାଲି ମଶା ଯୋଗୁ ଘୋରେଇ ହେବା ଦରକାର ପଡ଼ିଥାଏ । ତାଙ୍କୁ କିନ୍ତୁ ଶୋଉ ଶୋଉ ନିଦ । ମନେମନେ ଭାବିଲି । ଜୀବନ ଚଲାପଥରେ ଯାଉ ଯାଉ ବାଟଘାଟରେ ଅନେକ ଲୋକ ଦେଖା ହୁଅନ୍ତି କିନ୍ତୁ ସମସ୍ତଙ୍କ କଥା ମନେ ରହେନି । କିଛି ଲୋକଙ୍କ ସାଥିରେ ଇମିତି ଅଚାନକ ଦେଖାହୁଏ । ପ୍ରଥମ ଦେଖାରୁ ସଂପର୍କ ଆସିଯାଏ ଯାହାକି ଜୀବନରେ କେବେ ଭୁଲି ହୁଏନି । ସବୁ ଜୀବନର ନାଟକ ବହିରେ ଲିପିବଦ୍ଧ ହୋଇ ରହିଯାଏ । ... କେତେବେଳେ ନିଦ ଲାଗିଯାଇଛି । ସକାଳୁ ଉଠିଲା ବେଳକୁ ଦେଖେ ଗୋଟେ ଚଦର ତଳେ ଆମେ ଦୁହେଁ ଶୋଇଛୁ । ସେଇ ସବୁକଥା ମନେ ପକେଇଲେ ଗୋଟେ ପୋଥି ଲେଖି ଦେବା ପାଇଁ ଇଚ୍ଛା ହୁଏ । ଦିନ ପରେ ଦିନ ସରିଯାଏ କିନ୍ତୁ କଥା ସରେନି । ରାତି ସରିଯାଏ, ସ୍ୱପ୍ନ ସରେନି। ଜୀବନରେ ଶିଳ୍ପୀ ହେବା ସତରେ ଈଶ୍ୱରଙ୍କ ଆଶୀର୍ବାଦ ଉପରେ ନିର୍ଭର କରେ ।

ଖଲ୍ଲିକୋଟ ଆର୍ଟ ସ୍କୁଲରେ ଦୁଇଟି ହଷ୍ଟେଲ ! ଗୋଟେ କଟିକୀ ଆଉ ଗୋଟେ ଗଞ୍ଜାମୀ । ବଡ଼ ଅଡୁଆ କଥା ମୁଁ ତ କଟିକୀ ନୁହେଁ କି ଗଞ୍ଜାମୀ ନୁହେଁ କପାଳରେ ହାତ

ମାରିବାକୁ ପଡ଼ିଲା । ଚନ୍ଦ୍ରବାବୁ କହିଲେ ତୁମେ ଗଞ୍ଜାମ ହଷ୍ଟେଲ୍‌ରେ ରହିଲେ ଆମେ ସାଥି ହୋଇ ଗୋଟେ ରୁମ୍‌ରେ ରହିବା । ମୁଁ ବି ସେଇଆ ଭାବୁଥିଲି । ଗଞ୍ଜାମ ହଷ୍ଟେଲ, ରାଣୀ ହଂସପୁର, ସେଠାରେ ରାଣୀ ଏବଂ ତାଙ୍କ ଦାସୀ ପୋଇଲି ରହୁଥିଲେ । ଦିନବେଳେ ଚେମିଣୀ ଗୁଡ଼ାକ ଫଡ଼ ଫଡ଼ ହୋଇ ମୁଣ୍ଡରେ ଦେହରେ ବାଡ଼େଇ ହୋଇଯାଆନ୍ତି । ଗୋଟେ ରୁମ୍ ସିଲେକ୍ଟ କଲୁ । ଯୋଉ ରୁମ୍‌ରେ କି ଆମେ ୨ଜଣ ୪ବର୍ଷ ପର୍ଯ୍ୟନ୍ତ ଏକାଠି ରହି ଆସିଥିଲୁ ।

ରାଓବାବୁ ଯେତେବେଳେ ହସ୍ତଶିଳ୍ପ ବିଭାଗର ଡ଼ିଜାଇନ୍ ସେଣ୍ଟରରେ ଡ଼ିଜାଇନ୍‌ରଭାବେ ଥିଲେ ଏବଂ ଶ୍ରୀ ଶରତ ମହାନ୍ତି ଡ଼େପୁଟି ମ୍ୟାନେଜରଭାବେ ଥିଲେ ମୁଁ ବି.କେ. ଚାରୁ କଳା ମହାବିଦ୍ୟାଳୟକୁ ଭାସ୍କର୍ଯ୍ୟ ବିଭାଗର ଅଧ୍ୟାପକଭାବେ ଯାଇଥିଲି । ରାଓବାବୁ କହିଥିଲେ ଯାହାହେଉ ତୁମର ସୌଭାଗ୍ୟ । ଯଦିଓ ଈର୍ଷା କରି ନଥିଲେ ତଥାପି ମୁଁ ଅନୁମାନ କରିଛି ଏବଂ ଜାଣିଛି ମଧ୍ୟ । ତାଙ୍କର ଇଚ୍ଛାଥିଲା ଖଲ୍ଲିକୋଟ ହେଉ କି ବି.କେ. ଆର୍ଟ କଲେଜ ହେଉ ଇଣ୍ଡିଆନ୍‌ପେଣ୍ଟିଂ ଅଧ୍ୟାପକ ହୋଇ କିଛି ଛାତ୍ର ଉତାରିବା ପାଇଁ । ସେ ବି ଅନୁଭବ କରିଛନ୍ତି ଏ ସବୁରେ କେହି ବାଧା ସୃଷ୍ଟି କରିଥାଇପାରେ । ତାଙ୍କ ଜୀବନରେ ଜଣେ ନିଚ୍ଛକ ଶିଳ୍ପୀ ଭାବରେ ସେ ଯାହା କରିଯାଇଛନ୍ତି ତାହା ସବୁଦିନ ପାଇଁ ସମସ୍ତଙ୍କର ଅନୁକରଣୀୟ ହୋଇ ରହିବ ।

ନାଚ, ଗୀତ ମଜ୍ଜା ମଜ୍ଜଲିସ୍ ସହ କଳାଶିକ୍ଷା ଚାଲିଥାଏ । ଆମ ଦ୍ୱିତୀୟ ବର୍ଷ ବେଳକୁ ଦିନନାଥ ପାଠୀ ନାମ ଲେଖେଇଲେ । ସେ ବି ହାପ୍ ପ୍ୟାଣ୍ଟ ପିନ୍ଧୁଥିଲେ । ମୁଁ ସେତେବେଳକୁ ଫୁଲ୍‌ପ୍ୟାଣ୍ଟ୍ ପିନ୍ଧା ଆରମ୍ଭ କରିସାରିଥିଲି। ପାଠୀବାବୁ ବି ଏତେ ପିଲାଙ୍କ ଭିତରେ ଆମ ସାଥିରେ ମିଶିବା, ବସିବା କଥା ହେବା ପାଇଁ ପସନ୍ଦ କରୁଥିଲେ । ଆମ ସାଥିରେ ଥିଲେ ରାଧା ଚରଣ, କୃଷ୍ଣ ଆଚାରୀ ଚନ୍ଦ୍ରଶେଖର ସୁବୁଦ୍ଧି ଇତ୍ୟାଦି ।

ଦିନଯାକର ସବୁ ସମୟ ଆର୍ଟ କଲେଜରେ କଳା ଶିକ୍ଷାରେ ନିୟୋଜିତ୍ କଳାପରେ ସଂଧ୍ୟା ବେଳକୁ ପାଟଅଗଣାରେ ଆରମ୍ଭ ହୋଇଯାଏ ନାଚ ତାମସା, ଘଟ ମଙ୍ଗଳା, ଦଣ୍ଡନାଚ, ଚଢ଼େୟାଚଢ଼େୟାଣୀ, କାଳସୀ ଇତ୍ୟାଦିରେ ସମସ୍ତେ ଭାଗ ନିଅନ୍ତି । କିଏ ଥାଳି, କିଏ ବାକ୍ସ କିଏ ଟିଣ ବାଡ଼େଇ ବାଦ୍ୟ ଧ୍ୱନି ଆରମ୍ଭ କରି ଦିଅନ୍ତି । ମୁଖ୍ୟ ନାୟିକାରେ ଆମେ ଦୁଇଜଣ ଧରାବନ୍ଧା । ଉପର ମହଲାରୁ ଶରତ ଚନ୍ଦ୍ର ଦେଓଜୀ, ଅଜିତ୍ ସାର୍ ଦେଖି ଖୁସି ହୁଅନ୍ତି । ଉପରୁ ତଳକୁ ବକ୍‌ସିସ୍ ପକାନ୍ତି । ଡ୍ରାମାରେ ଚନ୍ଦ୍ର ହିରୋଇନ୍ ଭୂମିକାରେ ଅଭିନୟ କରନ୍ତି । ପ୍ୟାଥେଟିକ୍ ଦୃଶ୍ୟରେ ଏପରି ରୋଲ୍ କରନ୍ତି ନିଜେ ଷ୍ଟେଜ୍ ଉପରେ କାନ୍ଦି ପକାନ୍ତି ଏବଂ ଦର୍ଶକମାନଙ୍କ ଆଖିରୁ ଲୁହ ବାହାର କରି ଦିଅନ୍ତି । କେହି କେବେ ଭାବିବନି ଯେ ସେ ପୁଅ ହୋଇ ଝିଅ ଅଭିନୟ କରୁଛନ୍ତି । ପୁରା ଝିଅଟିଏ ସତେ ଯେମିତି ।

ପାଠୀବାବୁ ମଧ୍ୟ ଆମ ସାଥିରେ ତାଳ ଦେଲାଭଳି ପୁରୁଷ ଭୂମିକାରେ ଅଭିନୟ କରିବା ଏବଂ ଆମ ସହ ନାଚିବାରେ ପଛାନ୍ତି ନାହିଁ । ଏପରି ଆମ ଦୁଇ ଜଣଙ୍କର ମିଳାମିଶା ଦିନକୁ ଦିନ ବଢ଼ି ଚାଲିଥାଏ । ମୋ ଅପେକ୍ଷା ଚନ୍ଦ୍ରରାଓଙ୍କ ସାଥିରେ ପାଠୀବାବୁଙ୍କର ଅଧିକ ସଂପର୍କ ବଢ଼ିଚାଲିଥାଏ । ଏଣୁ ଟିକେ ଟିକେ କଥାରେ ଦୁଇଜଣଙ୍କର ମାନ, ଅଭିମାନ, ରାଗ ରୁଷା ବି ଚାଲିଥାଏ । ମୁଁ ସବୁବେଳେ ରାତିରେ ଶୋଇଲା ବେଳେ ସେମାନଙ୍କୁ ବୁଝାସୁଝା କରି ମିଳାମିଶା କରାଏ । ସେଇ ମାନ ଅଭିମାନ ରାଓବାବୁଙ୍କର ଶେଷ ଜୀବନ ପର୍ଯ୍ୟନ୍ତ ରହିଥିଲା । ସେ ବିଶ୍ୱାସରେ ମନେ ଅନେକ କଥା କୁହନ୍ତି । ସେ କଥା ମୁଁ ବି କାହା ଆଗରେ କହିପାରିବିନି । ମୁଁ ଭଲ ଭାବରେ ଅନୁଭବ କରିଛି ରାଓବାବୁ ପାଠୀବାବୁଙ୍କ ଉପରେ ସବୁବେଳେ ଅଭିମାନ ମନୋଭାବ ରଖି ଆସିଛନ୍ତି ।

ଖଲ୍ଲିକୋଟରେ ୪ବର୍ଷ ଏଇମିତି କଟିଗଲା । ତାପରେ ଯେଝା ଗାଁକୁ ଯିଏ ଫେରିଗଲୁ । ଖଲ୍ଲିକୋଟର କଳାଶିକ୍ଷା ସମୟରେ ଏବଂ ପରେ ମଧ୍ୟ ଆମେ ସାଙ୍ଗହୋଇ ତାଙ୍କ ଗାଁକୁ ଯାଇଛୁ । ସେ ଆମ ଗାଁକୁ ଆସନ୍ତି । ସାଥିରେ ପାଠୀ ବାବୁଙ୍କୁ ବି ଆଣନ୍ତି । ଏପରି କି ମାସେ ୧୫ ଦିନ ଲେଖାଏଁ ରହିଯାଉ । ଏବେ ବି ଯେତେବେଳେ ମୁଁ ଆମ ଗାଁକୁ ଯାଏ ମୋ ମା ପଚାରେ ପୁଅ ଚନ୍ଦ୍ରା କିମିତି ଅଛି । ଦିନା କିମିତି ଅଛି ଇତ୍ୟାଦି । ପାସ କଲା ପରେ ୨/୩ ମାସ ଭିତରେ ରାଓବାବୁ କଟକ ସେନ୍‌ସେସ୍ ଅପରେସନ୍‌ରେ ପୋଷ୍ଟିଂ ପାଇଲେ । ମାସେ ପରେ ମୋତେ ଡ଼କେଇ ନେଲେ । ମୁଁ ବି କଟକରେ ଗଉଡ଼ ସାହିରେ ଗୋଟେ ରୁମ୍‌ରେ ତାଙ୍କ ସାଥିରେ ଥିଲି । ତାପରେ ସେ ଚାଲିଗଲେ ଆସିକା ଟେକେନିକାଲ୍ ସ୍କୁଲକୁ । ମୁଁ ନିଯୁକ୍ତି ପାଇଲି ରେଜିଷ୍ଟର୍ କୋଅପରେଟିଭ ଅଫିସ୍‌ରେ । ମଝିରେ ପ୍ରାୟ ୭/୮ବର୍ଷ ଆମେ ଅଲଗା ରହିଯାଇଥିଲୁ । କିନ୍ତୁ ଚିଠି ମାଧ୍ୟମରେ ଆମର ସମ୍ପର୍କ ସେଇଭଳି ଅତୁଟ ରହିଥାଏ । ଯା ଭିତରେ ତାଙ୍କର ବାହାଘର ମୋ ବାହାଘର ସରିଯାଇଥାଏ ଓ ସେଠିକି ମଧ୍ୟ ପାଠୀବାବୁ ଆସି ମାସ ମାସ ଧରି ରହୁଥିଲେ ।

ତାପରେ ୧୯୭୮ ମସିହାରେ ୨ଜଣ ଯାକ ରାଜ୍ୟ ହସ୍ତ ଓ କୁଟୀର ଶିଳ୍ପ ବିଭାଗରେ ଡ଼ିଜାଇନ୍‌ର ପଦ ପାଇଁ ଇଣ୍ଟରଭ୍ୟୁ ଦେଇଥିଲୁ । ସେ ସିଲେକ୍‌ସନ୍ ହୋଇଥିଲେ । ଗୋଟେ ବର୍ଷ ପରେ ୧୯୮୦ ମସିହାରେ ମୁଁ ବି ସେଇ ହସ୍ତ ଓ କୁଟୀର ଶିଳ୍ପ ବିଭାଗର ଡ଼ିଜାଇନ୍ ସେକ୍ସନରେ ଟେରାକୋଟା ଇନିଷ୍ଟ୍ରକ୍ଟର ଭାବରେ ଜଏନ୍ କଲି । ସେତେବେଳେ ଡ଼ିଜାଇନ୍ ସେଣ୍ଟର ଭୁବନେଶ୍ୱର ୪ ନମ୍ବରସ୍ଥିତ ମସ୍‌ଜିଦ୍ ପାଖରେ ଥିଲା । ପୁଣି ଦୁଇ ଜଣ ଯାକ ଗୋଟେ କାର୍ଯ୍ୟାଳୟରେ ରହିଲୁ । ସେଇ ସୁଖ ଦୁଃଖ ହସ ଖୁସୀ ଜଞ୍ଜାଳ ବୋଝ ମୁଣ୍ଡେଇ କାମରେ ଲାଗି ରହିଲୁ । ହସ୍ତଶିଳ୍ପ ବିଭାଗଟି ଆମ ପାଇଁ ଥିଲା ଏକ ସୁଯୋଗ ଏବଂ ଆଶୀର୍ବାଦ ମଧ୍ୟ ।

ଏବେ ଚନ୍ଦ୍ରରାଓଙ୍କ ଆବର୍ତ୍ତମାନରେ ଏସବୁ ସ୍ମୃତି ଜୀବନ୍ତ ହୋଇ ଉଠୁଛି । ■

# ରାମହରି ଜେନା

## ନନାଙ୍କ ରାଓ ମାଷ୍ଟ୍ରେ

ଆଜି ନନା ନାହାନ୍ତି କି ବୋଉ ନାହିଁ । ନନାଙ୍କ ରାଓ ମାଷ୍ଟ୍ରେ ବି ଆଉ ନାହାନ୍ତି । ରାଓ ସାର ମୋର ଆପଣାର, ନିଜର, ଅତି ନିଜର ଥିଲେ, କଳାକାର ଜୀବନର ଆଦି ଗୁରୁଥିଲେ । ତାଙ୍କର ଶାନ୍ତ, ଧୀର ଲାଜ ଲାଜ ମୁହଁର ଚେହେରାଟା ମୋ ଭିତରେ ସବୁବେଳେ ଥିଲା, ଥିବ ।

ଗଲା ମକର ସଂକ୍ରାନ୍ତି ପୋଙ୍ଗଲ୍ ଦିନ ରାଷ୍ଟ୍ରୀୟ କଳା କେନ୍ଦ୍ର ଗ୍ୟାଲେରୀରେ ତାଙ୍କ ଆତ୍ମଜୀବନୀ 'ଚନ୍ଦ୍ରାୟନ'ର ଲୋକାର୍ପଣ ହେଲା । ରାଓ ସାର୍ କଳିଙ୍ଗ ହସ୍‌ପିଟାଲ୍‌ରେ ରୋଗଶଯ୍ୟାରେ । ତାର ସପ୍ତାହେ ଆଗରୁ 'ଚନ୍ଦ୍ରାୟନ'ର ଗୋଟିଏ କପି ତାଙ୍କୁ ଦିଆହୋଇଥିଲା ହସ୍‌ପିଟାଲ୍‌ରେ, ଆତ୍ମ ସନ୍ତୋଷରେ ଉଜ୍ଜ୍ୱଳ ଦିଶୁଥିଲା ତାଙ୍କ ମୁଖମଣ୍ଡଳ । ଲୋକାର୍ପଣ ଉତ୍ସବରେ ବନ୍ଧୁ ଅସିତ୍ ମହାନ୍ତି ମୋତେ ଅନୁରୋଧ କଲେ ରାଓ ସାରଙ୍କ ସହ ମୋର ଦୀର୍ଘଦିନର ସଂପର୍କର କଥା କହିବାକୁ । କିଛି କହିବାର ମାନସିକତା ମୋର ନଥିଲା । ମୋର ପ୍ରିୟ ରାଓସାର୍ ଆସନ୍ନ ମୃତ୍ୟୁ ସହ ସମାନା ସାମନି ଯୁଝୁଥିଲେ ଓ ହସ୍‌ପିଟାଲ୍‌ରୁ ତାଙ୍କ ଘରକୁ ଆଣିବାରେ, ଅକ୍‌ସିଜେନ ସିଲିଣ୍ଡର ବ୍ୟବସ୍ଥା କରିବାରେ ତାଙ୍କ ବଡ଼ପୁଅ ତାରାଶଙ୍କର ବ୍ୟସ୍ତଥିଲା । ଆମେ ସବୁ ଜାଣି ସାରିଥିଲୁ ତାଙ୍କର ଚଳ ଚଂଚଳ ଯାଦୁକରୀ ହାତ ସ୍ଥିର ନିଶ୍ଚଳ ହୋଇଯିବ ।

ଅତୀତକୁ ମନେପକେଇ କିଛି କହିଲା ବେଳେ ବାରମ୍ୱାର ତାଙ୍କ ଶାନ୍ତ, ଉଦାସ ମୁଖମଣ୍ଡଳ ମୋ ଆଖି ଆଗର ବାରମ୍ୱାର ଭାସି ଉଠୁଥିଲା । ଭାବାବେଗରେ ମୋର କଣ୍ଠ ବଷ୍ପାରୁଦ୍ଧ ହୋଇଯାଇଥିଲା । ଭାରତୀୟ ସମସାମୟିକ କଳାଧାରାର ଜଣେ ନିରବଛିନ୍ନ ସାଧକକୁ ଚିରଦିନ ପାଇଁ ଓଡ଼ିଶା ହରେଇଦେବ ।

ରାଓ ସାର୍‌ଙ୍କ ସହ ପ୍ରଥମ ଦେଖା କେବେ ହୋଇଥିଲା ଆଜି ମୋର ସ୍ପଷ୍ଟ ମନେନାହିଁ । ଆମ ଗାଁର ଢ଼େପ ପଡ଼ିଆ, ଆମ୍ବତୋଟା ପାଖ ଟେକ୍‌ନିକାଲ୍ ସ୍କୁଲ୍‌ର ଡ୍ରାମାରେ, ଗଣେଶ ପୂଜାରେ, ବିଶ୍ୱକର୍ମା ପୂଜାରେ, ସରସ୍ୱତୀ ପୂଜାରେ ନା ଢ଼େପର ସେ ନଡା ଚାଳଦିଆ ଚା ଜଳଖିଆ ହୋଟେଲ୍‌ରେ ? ଆମ ଗାଁ ମାଟିରେ ଟେକ୍‌ନିକାଲ୍ ସ୍କୁଲ୍ ସମ୍ଭ୍ରାନ୍ତ ଦର୍ପରେ ଠିଆ ହୋଇଥିଲା । ମୋର ମନେଅଛି ମୁଁ ସପ୍ତମ ଶ୍ରେଣୀ ପାଶ୍ କଲାପରେ ଟେକ୍‌ନିକାଲ୍‌ରେ ପଢ଼ିବା ନେଇ ମୋ ନନା ଓ ବଡ଼ଭାଇନା ଆଲୋଚନା କରୁଥିଲେ । ଶେଷରେ ଆମ ଗାଁରୁ ୫ କିଲୋମିଟର ଆସିକାର ହରିହର ହାଇସ୍କୁଲ୍‌ରେ

ମୁଁ ପଢ଼ିଲି । ସେତେବେଳେ କେବଳ ବିଶେଷ ଥିଲାବାଲା ଘରର ପିଲାମାନେ ଟେକ୍‌ନିକାଲ୍ ସ୍କୁଲରେ ପଢ଼ିପାରୁଥିଲେ । ହଷ୍ଟେଲ୍‌ରେ ରହିବା ବାଧ୍ୟତା ମୂଳକ ଥିଲା ଓ ଇଂରାଜୀ ମିଡ଼ିୟମରେ ସପ୍ତମରୁ ୧୨ କ୍ଲାସ ଯାଏଁ ପଢ଼ାଯାଉଥିଲା । ମୋର ଡ୍ରଇଁ ଭଲ ହେଉଥିଲା ଓ ଆମ ସ୍କୁଲର ଡ୍ରଇଁ ମାଷ୍ଟ୍ରେ ଖୁବ୍ ମଜାଳିଆ, ରସିକିଆ ଲୋକଥିଲେ । ସେ ନାଟ୍ୟକାର, ସଂଗୀତକାର, ନିର୍ଦ୍ଦେଶକ ତଥା ପ୍ରତିକୃତି ଅଙ୍କନରେ ସିଦ୍ଧହସ୍ତ ଥିଲେ । କର୍ମଚଞ୍ଚଳ ଆମ ଡ୍ରଇଁମାଷ୍ଟ୍ରେ ଆସିକାର ପ୍ରସିଦ୍ଧ ଲୋକମାନଙ୍କ ଭିତରୁ ଜଣେ ଥିଲେ । ତାଙ୍କ ନାଁ ହରିଶରଣ ମହାପାତ୍ର । ତାଙ୍କର କଳ୍ପନା ପ୍ରସୂତ ଉପେନ୍ଦ୍ର ଭଂଜ, କବିସୂର୍ଯ୍ୟ ବଳଦେବଙ୍କ ରୂପକଳ୍ପନା ପରବର୍ତ୍ତୀ ସମୟରେ ଓଡ଼ିଶାରେ ସର୍ବତ୍ର ପରିଚିତ । ମୁଁ ଗାଉଁଲି ପିଲାଥିଲି । ମୋ ବଡ଼ ଦୁଇଭାଇ ହରିହର ହାଇସ୍କୁଲରେ ପଢୁଥିବାରୁ ମୋ ଉପରେ ସେମାନଙ୍କର କଡ଼ାନଜର ଥିଲା । କ୍ଲାସରୁମ ଛଡ଼ା ଅନ୍ୟ କୌଣସି କାମରେ ହାତ ଦେବାର ଯୁ ନଥିଲା । ମୋର ନବମ ଶ୍ରେଣୀ ବେଳକୁ ସେମାନେ ହାଇସ୍କୁଲରୁ ଉତୁରି ସାରିଥିଲେ । ଏ ଅପୂର୍ବ ସୁଯୋଗରେ ମୁଁ ଡ୍ରଇଁସାରଙ୍କ ''କଳା ମନ୍ଦିର''ର ପ୍ରମୁଖ ସଦସ୍ୟ ହୋଇସାରିଥାଏ ଓ ହରିଶରଣ ମାଷ୍ଟ୍ରେଙ୍କର ସବୁ ନାଟତାମସାରେ ମୁଖ୍ୟ ଭୂମିକା ନେଉଥାଏ । ସେବର୍ଷ କଳା ମନ୍ଦିରରେ 'ପାଠ' ନାଟକର ରିହଲସଲ୍ ଚାଲିଥାଏ । ଷ୍ଟେଜ୍ ରିହଲ୍‌ସଲ୍‌ର ଆଗଦିନ ଆଉଜଣେ ନୂଆ ସାର ଆସିଲେ । ସରଳ, ନିଷ୍କପଟ ଚିହ୍ନା ଚିହ୍ନା ମୁହଁ । କଳା ପ୍ୟାଣ୍ଟ ସାଙ୍ଗକୁ ଇନ୍‌କରା ଧଳା ଟେରିଲିନ୍ ଫୁଲ୍ ସାର୍ଟ ଓ କଳା ମୁନିଆ ଜୋତା । ଡ୍ରଇଁ ମାଷ୍ଟ୍ରେ ସ୍ନେହ ସରାଗରେ ତାଙ୍କ ହାତଧରି ପାଛୋଟି ଆଣିଲେ, ଚେୟାରରେ ବସାଇଲେ । ଆମ ସହ ପରିଚୟ କରାଇଲେ ଟେକ୍‌ନିକାଲ୍ ସ୍କୁଲ୍‌ର ଆର୍ଟ ଟିଚର୍ ଶ୍ରୀ ଚନ୍ଦ୍ରଶେଖର ରାଓ । ନାଟକ ମଞ୍ଚସ୍ଥ ହେଲା । ରାଓ ସାର୍ ମୋ ଅଭିନୟରେ ଖୁସିହୋଇ ଗ୍ରୀନ୍‌ରୁମ୍‌ରେ ମୋତେ ଅଭିନନ୍ଦନ ଜଣାଇଲେ । ସେହି ପରିଚୟ ପରେ ପରେ ତାଙ୍କ କ୍ୱାଟରକୁ ଯିବାର ସୁଯୋଗ ପାଇଲି । ପ୍ରଥମ ଥର ଲାଗି ଭିନ୍ନ ଭିନ୍ନ ଶୈଳୀର ଚିତ୍ର ଦେଖିବାର ଅଦ୍ଭୁତ ଆନନ୍ଦ ପାଇଥିଲି । ତା ଅଗରୁ ହରିଶରଣ ମାଷ୍ଟ୍ରଙ୍କ ତୈଳଚିତ୍ରରେ ପ୍ରତିକୃତି ଓ କିଛି ଜଳରଙ୍ଗ ଚିତ୍ର ଦେଖିଥିଲି । ରାଓ ସାର୍ ଶ୍ରଦ୍ଧାରେ ତାଙ୍କ ଟେମ୍ପେରା, ୱାସ୍, ରେଖାଚିତ୍ର ଓ ଆଧୁନିକ ଶୈଳୀରେ ଛୁରୀରେ ତିଆରି ତୈଳ ଚିତ୍ର ସବୁ ଦେଖାଇଥିଲେ । ମନ ଲୋଭେଇ ଉଠୁଥାଏ । ସ୍କୁଲ୍‌ରେ ତାଙ୍କର ଷ୍ଟୁଡ଼ିଓରେ ସଂନ୍ଧ୍ୟାଧୂପ ଚିତ୍ର ଦେଖି ବିସ୍ମିତ ହୋଇପଡ଼ିଥିଲି । ତାଙ୍କର ଚିତ୍ରରେ ପ୍ରଭାବିତ ହୋଇଗଲି । ଖରାଛୁଟିରେ ମୋର ଚିତ୍ର ଶିଖିବା ଆରମ୍ଭ ହେଲା ଷ୍ଟୁଡ଼ିଓରେ ତାଙ୍କ ସାନିଧରେ । ପ୍ରଥମେ ପେନ୍‌ସିଲ୍ ସ୍କେଚ୍, ତାପରେ ବ୍ରସ୍‌ରେ ରେଖାଟଣା ପର୍ଯ୍ୟାୟ କ୍ରମେ ଟେମ୍ପେରା ଆରମ୍ଭ କଲି । ମୋର ମନେ ଅଛି 'ଧୋବା' ଟେମ୍ପେରା ଚିତ୍ରକୁ ମୁଁ କପି କରିବା ପାଇଁ ଚାହିଁଲି । ଧୂସର ରଙ୍ଗର ବିନ୍ୟାସରେ ଧୋବା ତାର ଲୁଗାଗଣ୍ଠିଲିକୁ ଗଧ ପିଠିରେ ଲଦି ଯାଉଛି ।

ମୋଟା ହଳଦିଆ ଆଟାରେ କନାକୁ ଅଠା ଲଗେଇ ଡ୍ରଇଁକୁ ଫ୍ରେମ୍ କରି ପାଉଡ଼ର ରଙ୍ଗ ମାଠି ପେଣ୍ଟିଙ୍ଗ କରିଥିଲି । ଓ୍ୱାର୍ ଟେକ୍‌ନିକ୍‌ରେ ତିନୋଟି ଚିତ୍ର କରିଥିଲି । ରାଓ ସାରଙ୍କ Winsor Newton Water Colour Wash Painting ରେ ବ୍ୟବହାର କରିଥିଲି । ଆସିକାରେ ଥିଲାବେଳେ ତାଙ୍କର ଦୁଇ ପ୍ରକାର ଚିତ୍ର ଏବେ ମଧ୍ୟ ମୋର ମନେପଡ଼ୁଛି । 'ପ୍ରସ୍ରବଣ ଶଇଳେ' ଭଳିଆ ଟେମ୍ପେରା, ମେଘଦୂତ ଯାହା ପୁରା ଶାନ୍ତିନିକେତ ଶୈଳୀରେ ଥିଲା । ଅନ୍ୟପଟେ ଅଧାଫାଳିଆ କଟାକଟି ନାକ, ବଡ଼ ପୋଟଳ ଚିରା ଆଖି, ବଳିଷ୍ଠ ସୁଢ଼ଳ ବକ୍ଷୋଜ, ମୋଟା ମୋଟା ରେଖା ଯାହା ଅନେକଟା ଦକ୍ଷିଣଭାରତୀୟ ଶୈଳୀର ଏକ୍ସପେରିମେଣ୍ଟାଲ୍ ଚିତ୍ରଥିଲା । ସେଥିରେ ସେ ଅଖାଛପା ଟେକ୍ସ୍‌ଚର ବ୍ୟବହାର କରୁଥିଲେ । ଅନ୍ୟପଟେ ଷ୍ପାଚୁଲାରେ ମୋଟା ମୋଟା ତୈଳରଙ୍ଗ ଦେଇ ବଂଗଳାଦେଶ ଉପରେ ତାଙ୍କର ପ୍ରତିକ୍ରିୟାଶୀଳ ଚିତ୍ର ମୋର ପ୍ରିୟଥିଲା ।

ଟେକ୍‌ନିକାଲ୍ ସ୍କୁଲ୍‌ରେ ଥିଲାବେଳେ ଆସିକା, ବୋଇରାଣି, ପୋଲସରା, କୋଦଳା, କାଳଷଣ୍ଢପୁର, ବୁଢ଼ାଆମ୍ବ, ପୁରୁଷୋତ୍ତମପୁର, ହୁମା, ଗଞ୍ଜାମ ଅଂଚଳରେ ଲୋକେ ତାଙ୍କ ପାଖକୁ ଛୁଟି ଆସୁଥିଲେ । ଡ୍ରମା ପାଇଁ ସିନ୍ ଦରକାର । ରାଓ ସାରଙ୍କ ଅଙ୍କିତ୍ ସିନ୍‌ର ଚାହିଦା ଖୁବ୍ ଜୋରଥିଲା । ସେଇଠି ଷ୍ଟୁଡ଼ିଓରେ ବାଉଁଶ ବାନ୍ଧି ସିନ୍‌ପେଣ୍ଟିଙ୍ଗ କରୁଥିଲେ । ମୁଁ ତାଙ୍କ ନିର୍ଦ୍ଦେଶରେ ରଙ୍ଗ ଫେଣ୍ଟିବା, ସିନ୍‌ରେ ତାଙ୍କ କହିବା ମୁତାବକ ରଙ୍ଗ ଭରୁଥାଏ । ଦୁଇ ଦିନରେ ଗୋଟିଏ ସିନ୍ ସାରିଦେଇ ପାରୁଥିଲେ । ବ୍ରହ୍ମପୁର, କାଟୁ, ବୋଇରାଣୀର ଚିତ୍ରାଳୟ ମାଲିକମାନେ ମଧ୍ୟ ସିନ୍‌ର ବରାଦ ଦେଉଥିଲେ । ଛୁଟିଦିନମାନଙ୍କରେ ଓ ରାତିରେ ସିନ୍ ଅଙ୍କା ହେଉଥିଲା । ବେଳେ ବେଳେ ଆମେ ଷ୍ଟୁଡ଼ିଓରେ ହିଁ ଶୋଇ ଯାଉଥିଲୁ ।

ହରିହର ହାଇସ୍କୁଲରେ ପଢ଼ିବା ବେଳୁହିଁ ଆର୍ଟ ସ୍କୁଲରେ ପଢ଼ିବାର ସଂକଳ୍ପ ନେଇସାରିଥାଏ । ମେଟ୍ରିକ୍ ପରୀକ୍ଷାରେ ପାଶ୍ କଲାପରେ ମୋର ଆଗାମୀ ପଢ଼ାପଢ଼ି ପାଇଁ ବିଭିନ୍ନ କଲେଜକୁ ଦରଖାସ୍ତ କରାଯାଇଥାଏ । ମୋର ମନ ଥାଏ ଖଲ୍ଲିକୋଟରେ । ନନା କିମ୍ବା ମୋ ଘରର କେହି ମୋ ସିଦ୍ଧାନ୍ତର ସପକ୍ଷରେ ନଥାନ୍ତି । ହରିଶରଣ ମାଷ୍ଟ୍ରେ ନନାଙ୍କୁ ବୁଝେଇ ଶୁଝେଇ ବିକାର ହୋଇଯାଉଥିଲେ । ଆମ ନନା ଅନ୍ୟ ମାଷ୍ଟ୍ରଙ୍କ କଥାକୁ ବେଶି ଠିକ୍ ବୋଲି ଧରିନେଇଥିଲେ । ଖଲ୍ଲିକୋଟରେ ପଢ଼ିଲେ ଡ୍ରଇଁମାଷ୍ଟ୍ରଟେ ହେବ ହୋ । ନନା ତାଙ୍କର ଗେହ୍ଲା ସାନପୁଅର ଭବିଷ୍ୟତକୁ ଅଭାବି ଡ୍ରଇଁ ମାଷ୍ଟ୍ର ରୂପରେ କଳ୍ପନା କରିବାକୁ ପ୍ରସ୍ତୁତ ନଥିଲେ । ରାଓ ସାର୍ ଆମ ଘର ସାଙ୍ଗରେ ବେଶ୍ ପରିଚିତ ହୋଇସାରିଥାନ୍ତି । ନନା ରାଓ ସାରଙ୍କୁ 'ରାଓ ମାଷ୍ଟ୍ରେ' ବୋଲି ଡ଼ାକୁଥାନ୍ତି । ନନା ରାଓ ସାରଙ୍କ ସାଙ୍ଗରେ ଅନେକବାର ମୋର ଭବିଷ୍ୟତ ଆଲୋଚନା କରୁଥିଲେ ବି ଆର୍ଟ ସ୍କୁଲରେ ପଢ଼ିବା ନେଇ ରାଜି ହେଲେନି । ରାଓ

ସାର୍ ନିରାଶ ହୋଇ ଯାଇଥାନ୍ତି । ଶେଷଥର ପାଇଁ ଚେଷ୍ଟାକରି ମଧ୍ୟ ବିଫଳ ହେଲେ ରାଓ ସାର୍ । ଏକପଟେ କଳା ବିଦ୍ୟାଳୟରେ ପଢ଼ିବା ନେଇ ମୋର ଜିଦ୍ ଓ ମୋ ପ୍ରତି ସାରଙ୍କ ଅକପଟ ସ୍ନେହ ତାଙ୍କୁ ଅସୁବିଧାରେ ପକାଇଥାଏ । ଆମ ଦୁହିଙ୍କ ଭିତରେ ଠିକ୍ ହେଲା ମୁଁ ଖଲ୍ଲିକୋଟ ଯାଇ ଦରଖାସ୍ତ ପକାଇବି, ଇଣ୍ଟରଭ୍ୟୁ ଦେବି ଘରେ କାହାକୁ ଜଣାଇବି ନାହିଁ । ସେୟା ହିଁ ହେଲା । ଇଣ୍ଟରଭ୍ୟୁ ପାଇଁ ତାଙ୍କରି ଠିକଣାରେ ଚିଠି ପାଇଲି । ଭୁବନେଶ୍ୱରରେ ଇଣ୍ଟରଭ୍ୟୁ ହେବ । ସାର୍ ଖୁବ୍ ଖୁସି । ସେହି ସନ୍ଧ୍ୟାରେ ଆମେ ଦୁହେଁ ତାଙ୍କରି ଗ୍ରୀନ୍ ମଡ଼େଲ୍ ସାଇକଲ୍‌ରେ ଉତ୍କଳ ସିନେମା ପେଣ୍ଡାଲ୍‌ରେ ଲାଲ୍‌ପଥର ସିନେମା ଦେଖିଥିଲୁ । ଆମ ଘରେ କାହାକୁ ନ କହି ଭୁବନେଶ୍ୱରରେ ଇଣ୍ଟରଭ୍ୟୁ ଦେବାକୁ ବାହାରି ପଡ଼ିଲି । ସାରେ ପାଠୀସାର୍‌ଙ୍କ ପାଖକୁ ଗୋଟିଏ ଚିଠି ଲେଖି ମୋତେ ସାହାଯ୍ୟ ପାଇଁ ଲେଖିଥିଲେ । ମୋ ସାଙ୍ଗ ଅଜିତ ପଟ୍ଟନାୟକ କଳ୍ପନା ଫ୍ଲାଟ୍‌ରେ ରହୁଥାଏ । ସିଏ ମଧ୍ୟ ଇଣ୍ଟରଭ୍ୟୁ ଦେବ । ଆମେ ଦୁହେଁ ମିଶି ସେଇ ଫ୍ଲାଟ୍‌ରେ ରହୁଥିବା ତାଙ୍କ ବନ୍ଧୁ ପାଠୀବାବୁଙ୍କୁ ଇଣ୍ଟରଭ୍ୟୁ ପୂର୍ବଦିନ ଦେଖାକରିଥିଲୁ । ମୋ ସ୍କେଚ୍ ଓ ପେଣ୍ଟିଙ୍ଗ ଓ ଅଜିତ୍‌ର ପେଣ୍ଟିଙ୍ଗ ଦେଖି ସେ ଖୁସିହୋଇଥିଲେ । ଭରସା ଦେଇ କହିଥିଲେ ତୁମ ଦୁହିଁଙ୍କ ହାତ ଖୁବ୍ ଭଲ । ମୋର ସାହାଯ୍ୟ କିଛି ଦରକାର ହେବନି । ରାଓ ପାଖରେ ଏତେ ସୁନ୍ଦର କାମ କରିଛ ନିଶ୍ଚୟ ସିଲେକ୍ଟ ହେବ । ମିଉଜମ୍‌ରେ ତାପର ଦିନ ପ୍ରାକ୍ଟିକାଲ୍ ପରୀକ୍ଷା ଦେଲି ଓ ଗାଁକୁ ଫେରିଥିଲି ।

ଇଣ୍ଟରଭ୍ୟୁର ଚିଠି ଆସିଲା । ସାର୍ ବଡ଼ଖୁସି ତାଙ୍କ ଛାତ୍ର ଫାଷ୍ଟ ହୋଇଚି । ଷ୍ଟାଇପେଣ୍ଡ ମଧ୍ୟ ମିଳିବ । ଆମ ଆଗରେ ବିରାଟ ସମସ୍ୟା ନନାଙ୍କୁ କିଏ ବୁଝାଇବ । ମୁଁ ରାତିରେ ବୋଉକୁ ବୁଝାଇ ନନାଙ୍କୁ ସକାଳୁ ସାରଙ୍କ ପାଖକୁ ପଠାଇବାକୁ କହିଲି । ରାଓ ସାର୍ ନନାଙ୍କୁ ସୁଖବର ଦେଇ ବୁଝାଇଦେଇ ପାରିଲେ ଓ ନନାଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଇଥିଲେ ଯେ ଆପଣଙ୍କ ପୁଅ ଡ୍ରଇଁମାଷ୍ଟ୍ର ହେବନି ବରଂ ସିଏ ସୃଜନଶୀଳ କଳାକାରଟିଏ ହେବ । ଆପଣଙ୍କ ବଂଶର ଯଶ ରଖିବ ।

ସ୍ୱର୍ଗରେ ଥିବା ମୋ ନନାଙ୍କ ସହ ସେ ନିଶ୍ଚୟ ମିଶିଥିବେ, ଦୁଃଖ ସୁଖ ହେଇଥିବେ । ରାଓ ମାଷ୍ଟ୍ରେଙ୍କଠୁ ପଚାରି ବୁଝିଥିବେ ମୁଁ ଏବେ କିମିତି ଚିତ୍ର ଆଙ୍କୁଛି ।



# ଶଙ୍କର ସାହୁ

## ଭୀମଟାଙ୍ଗୀର କି ଚନ୍ଦ୍ରଶେଖର

ଆମ ଘର (ପାଠୀସାର୍‌ଙ୍କ ଭୀମଟାଙ୍ଗୀ ଘର) ଆଗ ପଟ ଶିମୁଳି ଗଛରେ କିଛି ଦିନ ହେବ ଗୋଟେ ପେଚା ବୋବାଉ ଥାଏ । ବୋଉ କହେ ପେଚା ବୋବାଇଲେ ଅଶୁଭ । କିଛି ଗୋଟିଏ ଅସଙ୍ଗତ ଘଟେ । ସେଥିପାଇଁ ଗାଁରେ ପେଚା ବୋବାଇଲେ ନିଆଁରେ ପିଠିପାତିଆ ପକାନ୍ତି, ପେଚାକୁ ଚେଁକା ଲାଗେ ଓ ପେଚା ପଳାଏ । ମୁଁ ମଧ୍ୟ ମୋ ଷ୍ଟୋଭ୍‌ରେ ଥରେ ଦି ଥର ପିଠିପାତିଆ ପକାଇଛି ।

ରାଓ ସାର୍‌ଙ୍କ ଆମ ଘର ଓ ପାଠୀ ସାର୍‌ଙ୍କ ସହିତ ମୋର ସମ୍ପର୍କ ଥିଲା । ସେ ପ୍ରାୟ ଆମ ଘରକୁ ଯା'ଆସ କରୁଥିଲେ । ଭଲ ମନ୍ଦରେ ସେ ଆମ ଘରଲୋକ ଭଳି ଚଳୁଥିଲେ । ବଡ଼ ରାଓ ସାର୍ (ଚନ୍ଦ୍ରଶେଖର ରାଓ), ସାନ ରାଓ ସାର୍ (ଡ଼ି.ଏନ୍ ରାଓ) ଓ ରାମ ହରି ସାର୍ ପାଠୀ ସାର୍‌ଙ୍କ ପରେ ଆମ ଘରର ମୁଖ୍ୟ ଓ ନିଜ ଲୋକ । 'ଓ୍ୱା' ବିଷୟରେ ହେଉ ବା ଅନ୍ୟ କେଉଁ ପ୍ରଦର୍ଶନୀ କାମ ହେଉ ପ୍ରଥମେ ଆସି ପହଞ୍ଚିଯାଉଥିଲେ , ଏହି ତିନି ଜଣଙ୍କ ଭିତରେ ବିଚାର ଆଲୋଚନା ହୁଏ ।

ଚନ୍ଦ୍ରରାଓ ସାର୍ ଯେତେବେଳେ ଆମଘରକୁ ଆସନ୍ତି ସେ ମୋ କାମ ଦେଖନ୍ତି ଓ କହନ୍ତି ''ବଢ଼ିଆ କାମ ହେଉଛି, ହାତ ଅଛି, ଭଲକାମ ହବ ବା ଶଙ୍କର ଗାର ବଙ୍କା ହେଇଯାଇଛି, ଗୋଟେ ଧାପରେ ନିଶ୍ୱାସ ବନ୍ଦ କରି ଗାର ପକାଅ । ସେଡ଼ିଙ୍ଗ୍ କାହିଁକି ଦଉଚ ଏ ଗଛ ତ ପଟଚିତ୍ର ଗଛ ନୁହେଁ ଇତ୍ୟାଦି ଇତ୍ୟାଦି '' । ପ୍ରତ୍ୟକ୍ଷରେ ମୁଁ ତାଙ୍କଠୁ ଚିତ୍ର ଶିକ୍ଷା କରିନଥିଲେ ମଧ୍ୟ ମୁଁ ତାଙ୍କୁ ଗୁରୁ ବୋଲି ମାନେ ତାଙ୍କ ଚିତ୍ର ଦେଖି ମୁଁ ବହୁତ କିଛି ଶିଖିଛି । ତାଙ୍କ ଚିତ୍ର 'ବନଶ୍ରୀ', 'ଗୋଗୋଷ୍ଠ' ଓ 'ଗୋଧୂଳି' ମୋତେ ବହୁତ ଭଲ ଲାଗେ । ତାଙ୍କ ଚିତ୍ରର ଶୁଆ, ମୟୂର, ଚଢ଼େଇ, ଠେକୁଆ, ଗୁଣ୍ଡୁଚିମୂଷା, ଗାଈ, ବାରାହା, ହରିଣ, ଗଣ୍ଡା, ହାତୀ ଓ ବାଘ ବହୁତ ଭଲ ଲାଗେ । ସେଗୁଡ଼ିକୁ ଅନୁସରଣ କରି ମୁଁ ମଧ୍ୟ କିଛି ଚିତ୍ର କରିଛି ଓ ପରେ ଜାତୀୟ ବୃତ୍ତି ପାଇଛି । ମୁଁ ଯେତେବେଳେ ତାଙ୍କ ଘରକୁ ଯାଏ ସବୁବେଳେ ସେ ହେଣ୍ଡିକ୍ରାଫଟ୍ ଟ୍ରେନିଂ ସେଣ୍ଟର୍ କଥା ପଚାରନ୍ତି । ମୁଁ ସେଠି ପଢ଼ିଲା ବେଳକୁ ସେ ସୁପରିଟେନ୍‌ଡେଣ୍ଟ୍‌ରୁ ରିଟାୟର୍ଡ଼ କରିସାରିଥାନ୍ତି ।

ଭୁବନେଶ୍ୱରରେ ସେମିତି ତାଙ୍କ ଦେହ ଭଲ ହେଉ ନଥାଏ । ସେ ଭଲ ଡ଼ାକ୍ତର ଦେଖେଇବା ପାଇଁ ଦିଲ୍ଲୀ ଯାଇ ଘରକୁ ଫେରିଥାନ୍ତି । ମୁଁ ଓ କୁନୁଭାଇ (ସୌଭାଗ୍ୟ) ତାଙ୍କ ଘରକୁ ଯାଇଥାଉ । ସେତେବେଳେ ସେ ଯଦିଓ ଦୁର୍ବଳ ଦିଶୁଥାନ୍ତି କିନ୍ତୁ ଭଲ ହୋଇଗଲା ଭଳି ଲାଗୁଥାନ୍ତି । ଏତେ ଦେହ ଖରାପରେ ମଧ୍ୟ ମୋତେ ମୋ ଚିତ୍ର ବିଷୟରେ ପଚାରି ବୁଝିଲେ । କୁନୁଭାଇ ମନା କଲେ 'କାକା ଅଧିକ କଥା ହୁଅନ୍ତୁ

ନାହିଁ । ଆପଣ ବେଶୀ ଦୁର୍ବଳ ହୋଇଯାଇଛନ୍ତି, ହାଲିଆ ଲାଗିବ ।' ରାଓ ସାର କହିଲେ 'ଶୋଇ ଶୋଇ ବିରକ୍ତ ଲାଗୁଛି ଆଉ କଣ କରିବି ? କୁନୁ , ମୁଁ ଠିକ୍ ହେବା ପାଇଁ ଟାଇମ୍ ଲାଗିବ ନା ? ' କୁନୁଭାଇ କହିଲେ 'ଠିକ୍‌ସେ ଖିଆପିଆ କଲେ, ଶୋଇଲେ ଦି' ତିନି ମାସରେ ଠିକ୍ ହୋଇଯିବେ' । ସାର୍ ପୁଣି ପଚାରିଲେ ! ମୁଁ ସତରେ କ'ଣ ଆଉ ଭଲ ହେବି, ମୋତେ କାହିଁ ଲାଗୁନି' । କୁନୁ ଭାଇ କହିଲେ- 'କାକା ଆପଣ ବେକାରଟାରେ ଭାବୁଛନ୍ତି ଦେଖିବେ କିଛି ଦିନ ପରେ ଆପଣ ନିଜେ ସ୍କୁଟର ନେଇ ଯିବା ଆସିବା କରିବେ ।' ମୁଁ ଜାଣିଥାଏ କୁନୁଭାଇ ମିଛରେ ଆଶ୍ୱାସନା ଦେଉଥାନ୍ତି । କୁନୁଭାଇ ମୋତେ ବାହାରେ କହିଲେ 'ଶଙ୍କର ମୁଁ ମୋ ମା'କୁ ମିଛ କହି କହି ମୋର ଅଭ୍ୟାସ ହେଇଯାଇଛି ମା' କୁ ମଧ କାକାଙ୍କ ଭଳି ରୋଗ ହେଇଥିଲା ।'

ମଙ୍ଗଳବାର ଫେବୃଆରୀ ତିନି ତାରିଖ ଦିନ ତାରା (ଚନ୍ଦ୍ରଶେଖର ରାଓଙ୍କ ବଡ଼ପୁଅ) ଆମ ଘରକୁ ଫୋନ୍ କରି କହିଲା 'ନାନାଙ୍କ ଦେହ ବହୁତ ଖରାପ । ଡ଼ାକ୍ତର ଟାଇମ୍ ଦେଇବେଲେ, ନାନା ଆଜି ରାତିରେ ନ ହେଲେ କାଲି ସକାଳେ ଚାଲିଯିବେ' । ପାଠୀସାର୍ ବନାରସ ଯାଇଥାନ୍ତି । ଘରେ କୁନୁଭାଇ, ସୁବାସ, ମୁନା ଓ ମୁଁ ଥାଉ । ଆମେ ବ୍ୟସ୍ତ ହେଇଗଲୁ କ'ଣ କରିବୁ, କୁନୁଭାଇଙ୍କୁ ଜର ହୋଇଥାଏ । ତାରା ଫୋନ୍‌କଲା ପରେ ସିଏ ଯିବା ପାଇଁ ବାହାରିଲେ, ଆମେ ମନା କଲୁ । ମୁଁ କହିଲି ସୁବାସ ଓ ମୁନା ଦି ଜଣ ହସପିଟାଲ ଯାଆନ୍ତୁ, ସ୍କୁଟର ତ ଗୋଟେ ମୁଁ ଓ କୁନୁ ଭାଇ ଘରେ ରହିବୁ ।

ରାତି ଘଣ୍ଟେ ଅଧ ବେଳେ ସୁବାସ ଫୋନ୍ କରିଛି, ମୁଁ କବାଟ ଖୋଲି ଫୋନ୍ ପାଖକୁ ଗଲାବେଳକୁ ଫୋନ୍ ରିଙ୍ଗ୍ ବନ୍ଦ ହୋଇଗଲା । ଫୋନ୍ ଆଉ ବାଜିବ ଭାବି ଫୋନ୍ ପାଖରେ ବସିଥାଏ । ଆଉ ଫୋନ୍ ଆସିଲା ନାହିଁ । ମୁଁ ଡ଼ରିଗଲି, କଣ କିଛି ଅଘଟଣ ଘଟିଲା କି ? ସୁବାସ ସେପଟୁ କହିଲା ଚନ୍ଦ୍ର ରାଓ ସାର୍ ଚାଲିଗଲେ ।

■

## ତାରାକାନ୍ତ ପରିଡ଼ା

## ଚନ୍ଦ୍ରଶେଖର ରାଓ, ମୁଁ ଓ ମଡର୍ଣ୍ଣ ଆର୍ଟ ଗ୍ୟାଲେରୀ

ସ୍ମୃତିକୁ ସଜଡା ଭାଷାରେ ଲେଖିବା ମୋ ପକ୍ଷରେ ସମ୍ଭବ ନୁହେଁ, ତଥାପି ତାଙ୍କ ସ୍ମୃତିକୁ ଶବ୍ଦରେ ସଂକ୍ଷେପରେ ସଜାଡ଼ିବାର ପ୍ରୟାସ କରୁଛି । ୧୯୮୩ ମସିହାରେ ମୁଁ ଚନ୍ଦ୍ରଶେଖର ରାଓଙ୍କ ସଂପର୍କରେ ସେତେବେଳେ ଆସିଲି ଯେବେ ସେ Festival of Popular Art ପାଇଁ କିଛି ବିଶାଳକାୟ ଚିତ୍ର ନିର୍ମାଣ କରୁଥିଲେ । ସେ କାର୍ଯ୍ୟରେ ଆମର ଅନେକ ସାଙ୍ଗ ସହଯୋଗ ମଧ କରିଥିଲେ । ତାପରେ ରାଜ୍ୟ ସଂଗ୍ରହାଳୟର କିଛି ମ୍ୟୁରାଲ କାମ କରିବାକୁ ମୋ ବନ୍ଧୁ

ପ୍ରଦୋଷ ମିଶ୍ର ତାଙ୍କ ଘରକୁ ଯାଉଥାଏ । ଥରେ କାମ ଦେଖିବା ଓ ଶିଖିବା ବାହାନରେ ମୁଁ ତାଙ୍କ ଘରକୁ ପ୍ରଦୋଷ ସାଙ୍ଗରେ ଯାଇଥିଲି । ତାଙ୍କ କାମ ଦେଖି ମତେ ବହୁତ ଖୁସି ଲାଗିଲା ଓ ସେଗୁଡିକ ମୋ ମନକୁ ଗଭୀର ଭାବରେ ଛୁଇଁ ଯାଇଥିଲା । ସେ ଅଫିସ୍‌ରୁ ଫେରିନଥାନ୍ତି , ଆସିବାପରେ ପ୍ରଦୋଷ ମତେ ତାଙ୍କ ସହ ପରିଚୟ କରାଇଦେଲା ଓ ଫେରିବା ସମୟରେ ମୁଁ ସାଙ୍ଗରେ ଆଣି ଆସିଲି କିଛି ସ୍ନେହ, ମମତା ଓ ତାଙ୍କ ମହାନ୍ ବ୍ୟକ୍ତିତ୍ୱରୁ କିଛି । ମଝିରେ ମଝିରେ ମୁଁ ତାଙ୍କ ଘରକୁ ଯିବା ଆସିବା କରେ ଓ ଅନେକ କଥା, କଥାପ୍ରସଂଙ୍ଗରେ ସେ ବୁଝାଇ ଦିଅନ୍ତି । ସେ ବୁଝାଇବାରେ ଜୀବନରୁ ଆରମ୍ଭ କରି କଳା ଚର୍ଚ୍ଚା ସମୁଚୟ ସ୍ଥାନ ପାଇଥାଏ । ମୋର ମନେପଡେ ତୃତୀୟ ବର୍ଷ କଳାରେ ଆମକୁ specialisation ନେବାକୁ ହୋଇଥାଏ, ମୁଁ ଶୁଣିବାକୁ ପାଇଲି ଯେ ସେ ପାରମ୍ପରିକ କଳାରେ ଆମ କଲେଜକୁ ଅଧ୍ୟାପକ ହୋଇ ଆସିବେ । ନିଶ୍ଚୟ ଭାବରେ ଖୁସିଲାଗିଲା । ଯେ ମୁଁ ତାଙ୍କ ଛାତ୍ର ହୋଇପରିବି । ଏକଦା ତାଙ୍କସହିତ କଥାଛଳରେ ଯେତେବେଳ ମୁଁ ଏହି ଶୁଣାକଥାଟି ପକାଇଲି, ଏକ ଅଭିଯାନଭରା ହାସଟିଏ ହସିଦେଇ ସେ କହିଲେ, ସେଭାଗ୍ୟ ଆମର କାହିଁ? ପ୍ରଦୋଷ ସହିତ ଯାଇ ଯାଇ ମୁଁ ମଧ୍ୟ ତାଙ୍କ ପରିବାରର ଜଣେ ସଦସ୍ୟ ହୋଇଗଲି । ପ୍ରତ୍ୟେକ ବର୍ଷ ରାଖି ପୁର୍ଣ୍ଣିମାରେ ତାଙ୍କ ଝିଅମାନେ ମୋ ହାତରେ ରାଖି ବାନ୍ଧୁଥାନ୍ତି । ତାଙ୍କ ପରିବାରଟି ଯେମିତି ମୋତେ ଆପଣେଇ ନେଲା ରାଓ ସାର୍ କଲେଜ ଆସିଲେନି ଓ ମୁଁ ଗ୍ରାଫିକ୍ ନେଇ କଳା ଶିକ୍ଷାକୁ ଆପଣେଇଲି କିନ୍ତୁ ସଂପର୍କ ବଜାୟ ରହିଲା । ଏ ଭିତରେ ପ୍ରଦୋଷର ଗୀତା ସହିତ ସଂର୍ପକ ହୁଏ ଓ ରାଓସାର୍ ଏ ବିଷୟରେ ଅବଗତ ହୁଅନ୍ତି । ସେ ମୋ ସାଙ୍ଗ ଥିବାରୁ ଓ ମୁଁ ତାଙ୍କ ଘର ନିକଟରେ ରହୁଥିବାରୁ ରାଓ ସାର ମୋତେ ପ୍ରଦୋଷ ବିଷୟରେ ପଚାରନ୍ତି । ରାଓ ସାର୍ ନିଜ ଅପେକ୍ଷା ପ୍ରଦୋଷକୁ ଅଧିକ ଭଲ ପାଆନ୍ତି ଏବଂ ଶେଷ ପର୍ଯ୍ୟନ୍ତ ମଧ୍ୟ ଭଲ ପାଉଥିଲେ । କିନ୍ତୁ ଏହି ଘଟଣାକୁ ନେଇ ସେ ମୋ ସାଙ୍ଗରେ ଜଣେ ଅନ୍ତରଙ୍ଗ ବନ୍ଧୁଭଳି ମିଶି ଯାଇଥିଲେ ଓ ନିଜର ଅଭିମାନକୁ ମୋ ପାଖରେ ଖୋଲା ଖୋଲି ପ୍ରକାଶ କରୁଥିଲେ । ଏପରି ଅନେକ ନିଜ ବ୍ୟକ୍ତିଗତ ଅନୁଭବ ସେ ମୋ ସହିତ ବାଣ୍ଟନ୍ତି । ଏଇ ମଧ୍ୟରେ କିଛି ସ୍ମୃତି, ପରିସ୍ଥିତି ଓ ଅନୁଭୁତିକୁ ନେଇ ସମୟ ଆଗକୁ ଗଡିଚାଲେ । ୧୯୬୬ରେ ପ୍ରଦୋଷ ସହିତ ଗୀତାର ବିବାହ ହୋଇଗଲା ଓ ଏ ନେଇ ସାର୍ ବହୁତ ଖୁସି ଥାନ୍ତି । ତାପରେ ଆମ ମଧ୍ୟରେ ସାମାନ୍ୟ ବ୍ୟବଧାନ ସୃଷ୍ଟି ହୋଇଥିଲା କିନ୍ତୁ ଦେଖାହେଲେ ଖୁବ୍ କଥା ହୁଅନ୍ତି ।

୨୦୦୧ରେ ଯେତେବେଳେ Modern Art Gallery ସ୍ଥାପିତ ହେଲା ଓ ମୁଁ ଦାୟିତ୍ୱରେ ରହିଲି, ସେତେବେଳେକୁ ରାଓ ସାର୍ ଆବସର ନେଇ ସାରିଥାନ୍ତି । ତାଙ୍କର କେତେକ ଛବି ଆମ ଗ୍ୟାଲେରୀରେ ରଖିବା ପାଇଁ ମୁଁ ଗ୍ୟାଲେରୀ ପ୍ରତିଷ୍ଠାତା କରେନ୍ କେଣ୍ଟକୁ ନେଇ ତାଙ୍କ ଘରକୁ ଯାଇ ପହଞ୍ଚିଲି । ରାଓ ସାର୍ ଖୁସିରେ କରେନ୍ ସାଙ୍ଗରେ ପ୍ରାୟ ଦୁଇଘଣ୍ଟା

ଧରି ନିଜର ଛବି ବିଷୟରେ ଆଲୋଚନା କରିଥିଲେ ସ ଫେରିବାବେଳେ କିଛି ନେଇ ଫେରିଲୁ । ଫେରିବା ବାଟରେ କରେନ୍ ମତେ କହିଲେ ଯେ, ଯେତେ କଳାକାରଙ୍କ ସାଙ୍ଗରେ ତମେ ମତେ ଦେଖାକରାଇଛ, ସେମାନଙ୍କ ମଧ୍ୟରୁ ଏଇ ଚନ୍ଦ୍ରଶେଖରଙ୍କ ବ୍ୟକ୍ତିତ୍ୱ ଓ କଳା ମତେ ଖାସ୍ ପ୍ରଭାବିତ କରିପାରିଛି । ତାଙ୍କ ଛବି ଭଳି ହୃଦୟ ମଧ୍ୟ ମନକୁ ଛୁଇଁ ଗଲା । ତାପରଠୁ ଆମର ସଂପର୍କ ଗ୍ୟାଲେରୀ ପରିଚାଳକ ଓ ଗ୍ରାହକର ନଥିଲା । ସେ ଭରସାରେ ଅନେକ ଛବି ଦିଅନ୍ତି ଓ ପାରମ୍ପାରିକ ଶୈଳୀର ଛାପ ନେଇଥିବାରୁ ଛବିଗୁଡିକ ବିକ୍ରି ମଧ୍ୟ ହୁଏ । ପ୍ରଥମ ତିନୋଟି ଛବିର୍ ମୂଲ୍ୟ ସେ ଆସି ଗ୍ୟାଲେରୀରୁ ସଂଗ୍ରହ କରିଥିଲେ ମଧ, ସମ୍ମାନ ଦୃଷ୍ଟିରୁ ତାପରେ ମୁଁ ନେଇ ତାଙ୍କ ଘରେ ପଇଠ କରିଦେଇ ଆସେ । ସେ ମତେ ଦେଖିଲେ କାହିଁକି କେଜାଣି ଗୁଡାଏ ଖୁସି ହୋଇଯାଆନ୍ତି ଓ ଗପିଲା ବେଳେ ସମୟ ଦେଖିନଥାନ୍ତି । ମୁଁ ମଧ୍ୟ ଖୁସି ଓ ଧୈର୍ଯ୍ୟର ସହିତ ସମସ୍ତ କଥା ଶୁଣେ ଓ ପ୍ରଭାବିତ ହୁଏ ।

ଜୀବନର ଶେଷ ପର୍ଯ୍ୟାୟରେ ପୁଣି ଏକ ଅଘଟଣ ମଧ୍ୟରେ ସଂପର୍କ ନିବିଡ ହେଲା । ମୁଁ ପ୍ରକୃତରେ ଜାଣିନଥିଲି ଯେ ତାଙ୍କୁ କାହିଁକି କଷ୍ଟ ହେଉଛି ବା ସେ କହିଁକି କଳିଙ୍ଗ ହସ୍‌ପିଟାଲ୍‌ରେ ଭର୍ତ୍ତି ହୋଇଛନ୍ତି । ଦୁଃଖରେ ଭାଙ୍ଗି ପଡିଲି ଓ ନିଶ୍ଚୟ ଦେଖିବାକୁ ବାରମ୍ବାର ଗଲି । ପ୍ରଥମେ ସେଠିଦେଖି ମୁଁ କାନ୍ଦକୁ ରୋକିପାରି ନଥିଲି । ସେ ମୋତେ ବୁଝାଇ କହିଲେ, ତାରାକାନ୍ତ ବ୍ୟସ୍ତ ହେବନି ମୁଁ ଚାଲିଗଲେ ମଧ୍ୟ ମୋ ଆଶୀର୍ବାଦ ତୁମ ସହିତ ରହିବ । ଏଭଳି ଉକ୍ତି ଶୁଣି ଆହୁରି ଦୁଃଖ ଲାଗିଲା । ହଠାତ୍ ୩ ତାରିଖ ସକାଳେ ତାଙ୍କ ବଡ଼ ପୁଅ ତାରା ମତେ ଦେହ ଅସୁସ୍ଥତାର ଖବର ଦେଲା ଓ ତତ୍‌କ୍ଷଣାତ ମୁଁ ସେଠି ପହଞ୍ଚିଲି । ମୁଁ ତାଙ୍କ ଯନ୍ତ୍ରଣାର କାରଣ ବିଷୟରେ ଅବଗତ ହେଲି, ଅଧିକ ଦୁଃଖ ଲାଗିଲା । ସେଇ ରାତିରେ ମୁଁ ଯାହା ଭୟ କରୁଥିଲି ମୋ ଉପସ୍ଥିତିରେ ତାହା ଘଟିଗଲା । ଏଭଳି ଅନୁଭବରେ ମୁଁ ଅବାକ ରହିଗଲି ।

କୌଣସି ବ୍ୟକ୍ତିର ମନକିଣିବା ମୁଁ ତାଙ୍କ ଠାରୁ ଶିଖିଲି ଯାହା ମତେ ଗ୍ୟାଲେରୀ ପାଇଁ ଉପାଦେୟ ହୋଇଛି । ଏଭଳି ଏକ ସ୍ନେହୀ, ଉଦାରମନା କଳାକାରଟିଏ ମିଳିବା କଷ୍ଟକର । ଜୀବନରେ କାହାକୁ କଡା କରି ପଦେ କହିନାହାନ୍ତି । ସମସ୍ତ ଦୁଃଖ ସୁଖକୁ ଆପଣେଇ ମଧ୍ୟ ଛବିରୁ ବିରତ ନରହିଥିବା ଶିଳ୍ପୀଟିଏ, ଯେଉଁଠି ଯାଇଛନ୍ତି, ହୃଦୟ ଛୁଇଁ ଯାଇଛନ୍ତି, ତାଙ୍କୁ ମନେପକାଇବା ଦରକାର ନାହିଁ କାରଣ ସେ ମନରୁ ଦୂରେଇ ପାରିବେନି । ଚିତ୍ରକଳା କ୍ଷେତ୍ରରେ ତାଙ୍କର ଚିତ୍ର ତାଙ୍କ ମନକଥାକୁ କୁହେ, ତେଣୁ ଅନେକ ଛବିକୁ ବୁଝାଇବା ବେଳେ ତାଙ୍କ ଛବି ବୁଝାଇବାକୁ ପଡ଼ିନଥାଏ, ଆପେ ବିକ୍ରି ହୋଇଯାଏ । ମୋପାଇଁ ତାଙ୍କର ମହତ୍ତ୍ୱକୁ କଳ୍ପନା କରିପାରିବିନି । ସେ ମୋଭିତରେ, ଅନ୍ତରରେ ବାସ କରନ୍ତି କିନ୍ତୁ ତାଙ୍କ ବିୟୋଗରେ ଶରୀରରୁ ଅଲଗା ହୋଇ ରହିବାକୁ ବାଧ୍ୟ ହେଉଛି । ଅନେକ ଅକୁହା କଥା ଆଜି ଅକୁହା ରହିଗଲା ଓ ଗ୍ୟାଲେରୀ ମଧ୍ୟ ତାଙ୍କୁ ଝୁରିବ ।



## ନନ୍ଦିତା

## ବାପାଙ୍କ ବିନା ଜୀବନ

ବିଶ୍ୱାସ ଲାଗୁନି ଯେ ନାନା ଆମକୁ ଛାଡ଼ି ଚାଲିଗଲେ ବୋଲି, ଲାଗୁଛି ହଁ ସେ ଘରେ କେଉଁଠି କିଛି ଗୋଟେ କରୁଥିବେ । ସେ ଏତେ ସ୍ନେହୀ ଓ ମେଳାପି ଯେ ମତେ ଅନ୍ୟ ସାଙ୍ଗଟେ ଦରକାର ପଡ଼େନି । କାରଣ ମୁଁ ସ୍କୁଲ ସମୟରେ ଏବଂ କଲେଜ ସମୟରେ ଯାହା କିଛି ଘଟେ, ଆସିଲା ମାତ୍ର ତାଙ୍କ ସାଙ୍ଗେ ଗପେ । ସେ ମଧ୍ୟ ଆମମାନଙ୍କ ସାଙ୍ଗରେ ଏତେ ମଜ୍ଜିଯାଆନ୍ତି ଯେ ଲାଗେ ସାଙ୍ଗ ସାଙ୍ଗେ କଥା ବାର୍ତ୍ତା ହୋଉଛୁ । ଟି.ଭି. ଦେଖା, ଡ୍ରେସ କିଣିବା, ଶାଢ଼ୀ ପସନ୍ଦ କରିବା, କ'ଣ ପିନ୍ଧିଲେ ଭଲ ଲାଗିବ ସବୁଥିରେ ସେ ଏତେ ସହଯୋଗ କରନ୍ତି ଏବଂ ନିଜ ମତ ଦିଅନ୍ତି ଯେ ଭାରି ଭଲ ଲାଗେ । ମୁଁ ଦେଖିଛି କେତେ ଜଣ ସାଙ୍ଗ ବାପାମାନଙ୍କ କଥା ପଡ଼ିଲେ କହନ୍ତି ଆମ ବାପା ଆସିଲେ କିଛି ଭଲ ଲାଗେନି କିନ୍ତୁ ମୁଁ ଏଗୁଡ଼ିକ ଶୁଣିଲେ ଲାଗେ ବାପାଙ୍କ ବିନା ଜୀବନ କିଛି ନୁହେଁ । ଆମେ ତାଙ୍କ ଉପରେ ଏତେ ନିର୍ଭରଶୀଳ ହୋଇଯାଇଛୁ ଯେ, ମୁଁ ସେଗୁଡ଼ିକ ଭାବିଲେ ଆଖିରୁ ଲୁହ ରୋକି ହୁଏନା ।

■

## ପିଙ୍କି

## ଦରଦୀ ମଣିଷ

ଆଜକୁ ପ୍ରାୟ ୧୫ ବର୍ଷ ହୋଇଗଲାଣି ମୋ କୁନି କୁନି ହାତରେ ପେନସିଲ୍ ଧରେଇ ଅତି ସ୍ନେହର ସହିତ ଯିଏ ଚିତ୍ର ଆଙ୍କିବା ଶିଖେଇ ଦେଇଥିଲେ ସିଏ ହେଉଛନ୍ତି ଆମ ସାର୍ ଚନ୍ଦ୍ରଶେଖର ରାଓ ପରେ ଜାଣିଲି ସିଏ ହେଉଛନ୍ତି ଆମ ଓଡ଼ିଶାର ଜଣେ ଖ୍ୟାତନାମା ଚିତ୍ରଶିଳ୍ପୀ । କିନ୍ତୁ ଏହା ଛଡ଼ା ସେ ଯେ କେତେ ଭଲ ମଣିଷ ଥିଲେ ସେ କଥା ତାଙ୍କ ସଂସ୍ପର୍ଶରେ ଆସିଥିବା ଲୋକମାନେ ହିଁ ଅନୁଭବ କରିପାରି ଥିଲେ । ଜଣେ ଚିତ୍ରକର ହିସାବରେ ସେ ଏକାଧାରରେ ଯେମିତି ଅଧ୍ୟବସାୟୀ ଓ ନିଷ୍ଠାପର ଥିଲେ ସେମିତି ମିଷ୍ଟଭାଷୀ ଉଦାର ହୃଦୟ ଏବଂ ସ୍ନେହୀ ମଣିଷଟିଏ ଥିଲେ । ଆଜି ତାଙ୍କ ଚିତ୍ରକୁ ଦେଖଲେ ସେମାନେ ଜୀବନ୍ତ ଭଳି ମନେହୁଅନ୍ତି କାରଣ ସେ ଚିତ୍ରମାନଙ୍କରେ କେବଳ ମଣିଷ ହୃଦୟର ଆବେଗଶୀଳତା ଫୁଟିଉଠିଛି ତାହା ନୁହେଁ ତଦ୍ ସହିତ ଚିତ୍ରକର ହୃଦୟର ସ୍ପନ୍ଦନ ଏବଂ ସମ୍ବେଦନଶୀଳତା ମଧ ମିଶିକରି ରହିଛି । ସେ ଆମକୁ ତାଙ୍କ ନିଜ ଧାରାରେ ଚିତ୍ର କରିବାକୁ ପ୍ରବର୍ତ୍ତାଇ ନାହାନ୍ତି ବରଂ ସ୍ୱକୀୟ ଧାରାରେ କରିବାକୁ ସବୁବେଳେ ଉତ୍ସାହ ଦେଇଛନ୍ତି । ସାନସାନ ପିଲାମାନଙ୍କୁ କେତେ ଧୈର୍ଯ୍ୟର ସହିତ ଚିତ୍ରକରିବାକୁ

ପ୍ରୋତ୍ସାହନ ଦିଅନ୍ତି ସାର୍ ଭଳି କଡ଼ା ଭାବରେ ନୁହେଁ ବରଂ ବାପା ଭଳି ଆଙ୍ଗୁଳି ଧରି ଚିତ୍ରକରିବାର ସୋପାନ ପରେ ସୋପାନ ଅତିକ୍ରମ କରେଇ ନିଅନ୍ତି ତାହା ମୁଁ ଅଙ୍ଗେ ଅଙ୍ଗେ ଅନୁଭବ କରିଛି । ତାଙ୍କର ଅକାଳ ବିୟୋଗରେ ଓଡ଼ିଶା ଜଣେ ପ୍ରତିଭାବାନ ଚିତ୍ରଶିଳ୍ପୀକୁ ଦରଦୀ ମଣିଷ ଏବଂ ବନ୍ଧୁଙ୍କୁ ହରେଇଲା । ତାଙ୍କ ଆତ୍ମାର ସଦ୍‌ଗତି ହେଉ, ଆଜି ମୁଁ ଇଶ୍ୱରଙ୍କ ପାଖରେ ଏତିକି ପ୍ରାର୍ଥନା କରୁଛି ।

■

## ଉଦିତ ପ୍ରତାପ ସିଂହ

## ପୂର୍ବାନୁଭୂତି

୧୯୫୭ ସାଲରେ ଓଡ଼ିଶାର ପ୍ରଥମ ଚାରୁକଳା ବିଦ୍ୟାଳୟ ସ୍ୱର୍ଗତ ଶରତଚନ୍ଦ୍ର ଦେଓଙ୍କ ଅଧକ୍ଷତାରେ ଖଲ୍ଲିକୋଟରେ ସ୍ଥାପିତ ହୋଇଥିଲା । ସେତେବେଳେ ଲିଙ୍ଗରାଜ ପାଣିଗ୍ରାହୀ ଓଡ଼ିଶାର ଶିକ୍ଷା, ଆଇନ ଓ ଘରୋଇ ବିଭାଗର ମନ୍ତ୍ରୀ ଥିଲେ । ଚାରୁକଳା ବିଦ୍ୟାଳୟ ସ୍ଥାପିତ ହେବାର କିଛି ମାସ ପରେ ମୁଁ ସେହି ବିଦ୍ୟାଳୟର ମୁଖ୍ୟ କିରାଣୀ ରୂପେ ଯୋଗ ଦେଇଥିଲି । ଅବଶ୍ୟ ସେ ସମୟର ଅନେକ ବିଷୟ ମୁଁ ଭୁଲି ଯାଇଥିଲେ ମଧ କେତେକ ନିର୍ଦ୍ଦିଷ୍ଟ ଘଟଣା ମୁଁ ମନେରଖିଛି । ସେ ବିଷୟଗୁଡ଼ିକ ଭିତରେ ସେ ସମୟରେ ଅନୁଷ୍ଠାନରେ ଶରତ ଦେଓଙ୍କ ବ୍ୟତୀତ ଅଜିତ କେଶରୀ ( ୟ, ବିପିନ୍ ବିହାରୀ ଚୌଧୁରୀ, ବିପ୍ରଚରଣ ମହାନ୍ତି ଓଗେରା ଅଧାପକମାନେ ମଧ କାମ କରୁଥିଲେ ।

ସେହି ସମୟରେ ଖଲ୍ଲିକୋଟ ଚାରୁକଳା ବିଦ୍ୟାଳୟରେ ଭର୍ତ୍ତି ହେବା ପାଇଁ ଜଣେ ଛାତ୍ରର ଶିକ୍ଷାଗତ ଯୋଗ୍ୟତାର ବିଶେଷ ଦରକାର ପଡୁନଥିଲା । ତେଣୁ ଗଞ୍ଜାମ ଜିଲ୍ଲାର ବିଶେଷ କରି ସ୍ଥାନୀୟ ଯୁବକମାନେ ଏହି ସ୍କୁଲରେ ପାଠପଢ଼ିବା ପାଇଁ ବହୁ ସଂଖ୍ୟାରେ ଉପସ୍ଥିତ ହେଉଥିଲେ । ପ୍ରତ୍ୟେକ ଶ୍ରେଣୀରେ ଛାତ୍ରସଂଖ୍ୟା ୩୦ରେ ସୀମିତ ଥିଲା । ଦୁଃଖର କଥା ସେହି ସମୟରେ ଛାତ୍ରବୃତ୍ତି ଯେତିକି ସରକାର ଦେଉଥିଲେ ବର୍ତ୍ତମାନ ୨୦୦୪ ମସିହାରେ ମଧ କିଛି ବଢ଼ିନାହିଁ । ଚାରୁକଳା ବିଦ୍ୟାଳୟର ଛାତ୍ରଛାତ୍ରୀମାନେ ଏହି ବିଦ୍ୟାଳୟରେ ଶିକ୍ଷାଲାଭ କରିବା ପାଇଁ ବିଭିନ୍ନ ବିଭାଗ ରହିଛି ଯଥା- ତୈଳ ଚିତ୍ର, କମିର୍ସିଆଲ ଆର୍ଟ, ଭାରତୀୟ ଚିତ୍ରକଳା, ପଥର ଖୋଦେଇ, ମଡ଼େଲିଙ୍ଗ ଇତ୍ୟାଦି । ସେଥିଲାଗି ଛାତ୍ରମାନଙ୍କୁ ବହୁତ ଖର୍ଚ୍ଚାନ୍ତ ହେବାକୁ ପଡ଼ିଥାଏ । ତେଣୁ ୩୦ ଜଣ ଛାତ୍ର ମଧରୁ ୧୫ ଜଣ ଛାତ୍ର ଯେଉଁ ସ୍ୱଳ୍ପହାରରେ ବର୍ତ୍ତମାନ ସୁଦ୍ଧା ବୃତ୍ତି ପାଉଛନ୍ତି ତାହା ଅତି ନଗଣ୍ୟ ମନେହୁଏ ।

ସେହି ସମୟରେ ବହୁ ଅନ୍ୟ ଜିଲ୍ଲାର ଛାତ୍ରୀମାନେ ମଧ ଅଧୟନ କରୁଥିଲେ । ସେମାନଙ୍କ ମଧରୁ କୃତି ଛାତ୍ର ଓ ଛାତ୍ରୀଙ୍କ ନାମ ମୋର ମନେଅଛି ଯଥା- ସୁଜାତା,

ସ୍ନେହ, ବସନ୍ତ ସାମନ୍ତ, ଦିନନାଥ ପାଠୀ, ଚନ୍ଦ୍ରଶେଖର ରାଓ, ଦେବରାଜ ସାହୁ, ରମେଶ ମହାନ୍ତି, ବ୍ରଜବନ୍ଧୁ ମିଶ୍ର ଇତ୍ୟାଦି । ବିଦ୍ୟାଳୟରେ ଅନେକ ନାଟକ ଅଭିନୀତ ମଧ୍ୟ ହୋଇଛି । ସେଥିମଧ୍ୟରୁ ଜୟମାଲ୍ୟ ଅଭିନୀତ ହେବାର ମୋର ମନେପଡୁଛି । ସେହି ନାଟକରେ ଚନ୍ଦ୍ରଶେଖର ରାଓ, ବିପିନ୍ ବିହାରୀ ସାହୁ ନାରୀ ଭୂମିକାରେ ସୁନ୍ଦର ଅଭିନୟ କରୁଥିଲେ । କ୍ଷୋଭର ବିଷୟ ଚନ୍ଦ୍ରଶେଖର ରାଓ ବର୍ତ୍ତମାନ ଇହଧାମରୁ ବିଦାୟ ନେଇଛନ୍ତି ।

■

## ଲଡୁକେଶ୍ୱର ପାଢ଼ି
## ନାରୀବେଶ

ଚନ୍ଦ୍ରଶେଖର ରାଓ ଖଲ୍ଲିକୋଟ ଚାରୁ ଓ କାରୁକଳା ବିଦ୍ୟାଳୟରେ ମୋର ତଳ ଶ୍ରେଣୀରେ ଅଧ୍ୟୟନ କରୁଥିଲେ । ମୋର ସହପାଠୀ ନ ହେଲେ ମଧ୍ୟ ବ୍ୟକ୍ତିଗତଭାବେ ତାଙ୍କ ସହ ମୋର ଭଲ ସମ୍ପର୍କ ଥିଲା । ଦୀର୍ଘ ଚାରିବର୍ଷର ସମ୍ପର୍କ ମଧ୍ୟରେ ତାଙ୍କର ଗୋଟିଏ ଗୁଣ ମୋତେ ଆକୃଷ୍ଟ କରିଥିଲା ତାହା ହେଉଛି ତାଙ୍କର ଅଭିନୟ କଳା । ସାମୟିକଭାବେ ଚନ୍ଦ୍ରଶେଖର ରାଓ ଏବଂ ଦେବରାଜ ସାହୁ ଉଭୟେ ଶାଢ଼ୀ ଓ ବିଭିନ୍ନ ଅଳଙ୍କାର ପରିଧାନ କରି ନାରୀବେଶରେ ବଜାରକୁ ଆସିବା ସଙ୍ଗେ ସଙ୍ଗେ ବଜାରରେ ବିଭିନ୍ନ ଲୋକଙ୍କ ସହିତ ଯେଉଁ ପରି ବ୍ୟବହାର କରୁଥିଲେ ତାହା ସମସ୍ତଙ୍କୁ ଆନନ୍ଦ ପ୍ରଦାନ କରୁଥିଲା । ତାଙ୍କର ବିୟୋଗରେ ମୁଁ ଗଭୀର ଭାବେ ମର୍ମାହତ । ତାଙ୍କର ଆତ୍ମାର ସଦ୍‌ଗତି ହେଉ, ଏହା ଭଗବାନଙ୍କ ନିକଟରେ ମୋର ପ୍ରାର୍ଥନା ।

■

## କୁନ୍ତଳା କୁମାରୀ ପାତ୍ର
## ସମାଜସେବୀ

ଚନ୍ଦ୍ରଶେଖର ବାବୁ ଖଲ୍ଲିକୋଟ ଚାରୁ ଓ କାରୁକଳା ବିଦ୍ୟାଳୟର ଛାତ୍ର ଥିଲେ । ସିଏ ବହୁତ ଭଲ ଚିତ୍ର କରୁଥିଲେ । କେବଳ ଜଣେ ଭଲ ଚିତ୍ରକର ନୁହଁ ସିଏ ଏକାଧାରରେ ବନ୍ଧୁବତ୍ସଳ ଏବଂ ଦୟାଶୀଳ ଥିଲେ । ତାଙ୍କରି ଅନୁପସ୍ଥିତି ଦୁଃଖ ଦେଉଛି । କିନ୍ତୁ ତାଙ୍କରି ଚିରସ୍ମରଣୀୟ କାର୍ଯ୍ୟଗୁଡ଼ିକ ଆମରି ମନରେ ଅଭୁଲା ସ୍ମୃତି ହୋଇରହିଯିବ । ସୁଦୀର୍ଘ ଯାତ୍ରାପଥରେ ତାଙ୍କରି କାର୍ଯ୍ୟରତ ଜୀବନ ସମସ୍ତଙ୍କୁ ଆନନ୍ଦିତ ଏବଂ ନିଜର ପରିପାରିଥିଲା । ସେ ଯେ ନିଶ୍ଚିତ ଭାବରେ ସମସ୍ତଙ୍କ ହୃଦୟରେ ଏକ ଉଜ୍ଜ୍ୱଳ ତାରକା ସଦୃଶ ରହିବେ ଏହା ମୋର ଭଗବାନଙ୍କ ପାଖରେ ପ୍ରାର୍ଥନା ।

■

# ବସନ୍ତ କୁମାରୀ ସାମନ୍ତ

## ସ୍ମୃତି

ସ୍ୱପ୍ନକୁ ବାସ୍ତବତାରେ ପରିଣତ କରିବା ସୃଷ୍ଟିର ଧର୍ମ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଜୀବନ ଏକ ଦୀର୍ଘ ସ୍ୱପ୍ନଟିଏ । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ମଣିରେ ଯାତ୍ରାହିଁ ଦୀର୍ଘସ୍ୱପ୍ନ । ତାରି ଭିତରେ କ୍ୱଚିତ୍ ମଣିଷ ସାର୍ଥକତାକୁ ଉପଲବ୍ଧି କରନ୍ତି ।

ସେମିତି ଶିଳ୍ପୀଟିଏ ହେଉଛନ୍ତି ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରାଓ ଯାହାଙ୍କ ସହିତ କଳାଶିକ୍ଷା ସମୟରେ ଖଲ୍ଲିକୋଟରେ ମୋର ପ୍ରଥମ ସାକ୍ଷାତ।

ଆଜି ବି ସେଇ କଥା, ସେଇ ହସ, ସେଇ ସରଳତାର ପ୍ରତୀକ ମୂର୍ତ୍ତିଟିଏ ଆଖି ଆଗରେ ନାଚି ଯାଉଛି । ଯାହାକୁ ଭୁଲିବାର ନୁହେଁ । ସେଇ ସମ୍ପର୍କ ଯାହା ଭିତରେ ଭରି ରହିଥିଲା ସ୍ନେହ, ଶ୍ରଦ୍ଧା, ପବିତ୍ରା ଓ ମଧୁର ମୂଲ୍ୟବୋଧ ।

ଆଜି କୋହ ଆଉ ଲୁହ ଭିତରେ ସେଇ ସ୍ମୃତି ଜାଗ୍ରତ ହୋଇଉଠୁଛି । କଳା ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେଲାପରେ କେହି କଳାକାର ହୋଇଯାଏନି । ଯିଏ କଳାକୁ ସାଧନା କରି ଆତ୍ମନିୟୋଜିତ ହୁଏ ସେହିଁ ପ୍ରକୃତ କଳାକାର । ସେହିଭଳି ଜଣେ ବ୍ୟକ୍ତିତ୍ୱ ଚନ୍ଦ୍ରଶେଖର ରାଓ । ଶରୀରର ମୃତ୍ୟୁ ହୁଏ, ଆତ୍ମାର ନୁହେଁ । ଯେଉଁ ଭଳି ଆତ୍ମା ଅମର ସେହି ଭଳି କଳା ବି ଅମର । ସେ ବଞ୍ଚିଛନ୍ତି, ତାଙ୍କ ହୃଦୟର ପ୍ରତ୍ୟେକ ସ୍ପନ୍ଦନ ଚିରଜୀବିତ । ଏହି ଆନ୍ତର୍ଜାତିକ ଶିଳ୍ପୀଙ୍କର ଆତ୍ମାର ସଦ୍‌ଗତି ହେଉ ।

କାମନା ଏତିକି ଆଜି ଏ ପ୍ରାଣେ ମୋହର<br>
ଆନ ଏକ ମା' ଗର୍ଭେ ହୁଅହେ ସଞ୍ଚାର<br>
ପୁନରପି ଜନ୍ମ ନେଇ ଏହି ଧରା ପରେ<br>
ରଚନାର ରମ୍ୟ ରୂପ ଦିଅ ଏ ମହିରେ<br>
ଶିଳ୍ପୀ ପ୍ରାଣ ତଳେ ଯେତେ ଥିଲା ଅବଶୋଷ<br>
ମେଣ୍ଟାଇ ଦିଅହେ ତାହା, ସ୍ରଷ୍ଟା ପାଇଁ ସୃଷ୍ଟିକୋଳ

ତାଙ୍କର ବାନ୍ଧବୀ ହିସାବରେ ଶୋକାତୁର ପରିବାରବର୍ଗଙ୍କୁ ମୋର ଆନ୍ତରିକ ସମବେଦନା ଜଣାଉଛି ।



## ଦିନନାଥ ପାଠୀ

# ଷାଠିଏ ବର୍ଷରେ ଚନ୍ଦ୍ରଶେଖରଙ୍କ ଜୀବନ ଓ ଚିତ୍ରକଳାର ଗ୍ରନ୍ଥୀମୋଚନ

ଏକ ଉତ୍ତରାଧିକାର ସୂତ୍ରରେ ବନ୍ଧା ଅର୍ଦ୍ଧସହରୀ ସମାଜରେ ଯେଉଁଠି ମତବାଦ ସ୍ଥିରୀକୃତ ଆପ୍ତ ଭାବଧାରାରେ, ସେଠି ଷାଠିଏ ବର୍ଷ ଏକ ମ୍ୟାଜିକ୍ ସଂଖ୍ୟା, ଯାହାକି ଦୀର୍ଘତ୍ୱକୁ ଗ୍ରଥିତ କରେ, ଜୀବନର ଅସଂଲଗ୍ନ ମୁହୂର୍ତ୍ତକୁ ଜୀବନାୟନ ଓ କଳା ମନସ୍କତା ମଧ୍ୟରେ ରଖି ତା'ର ଗ୍ରନ୍ଥୀ ମୋଚନ କରେ । ଏହା ଏକ ବିଶାଳ ପ୍ରଶ୍ନବାଚୀ ଯାହାକି ବହୁଳ ବିଷୟକୁ ଅଙ୍ଗୀକାର କରିଥାଏ ।

ନିକଟ ଅତୀତରେ ମଣିଷ ଜିନ୍‌କୁ ନେଇ ହୋଇଥିବା ସାର୍ବଜନୀନ ଓ ବ୍ୟକ୍ତିଗତ ପ୍ରୋଜେକ୍ଟର ଫଳଶ୍ରୁତି ଅନେକ ବୈଜ୍ଞାନିକ, ଅର୍ଥନୈତିକ, ସାମାଜିକ ଓ ନୈତିକ ପ୍ରଶ୍ନବାଚୀର ପଥ ସୃଷ୍ଟି କରିଛି । ଏହି ପ୍ରଶ୍ନବାଚୀ ସବୁ ମାନବୀୟ ସ୍ଥିତିର ଗ୍ରନ୍ଥୀମୋଚନ ସହିତ ସଂପୃକ୍ତ ଯାହାକି ସୌନ୍ଦର୍ଯ୍ୟବୋଧର ପ୍ରତିବନ୍ଧକଗୁଡ଼ିକୁ ପ୍ରତିଫଳିତ କରି ନଥାଏ । ଏହା ସର୍ବକାଳର ସର୍ବଜାତୀୟତାର ଚିତ୍ରଶିଳ୍ପୀମାନଙ୍କଦ୍ୱାରା ଅଙ୍ଗୀକୃତ ହୋଇଥାଏ ଏବଂ ଏହା ପାବ୍ଲୋ ପିକାସୋଙ୍କଠାରୁ ନାରଲେଙ୍କା ଚନ୍ଦ୍ରଶେଖରଙ୍କ ପର୍ଯ୍ୟନ୍ତ ପରିବ୍ୟାପ୍ତ । ବାସ୍ତବତଃ ଗ୍ରନ୍ଥୀମୋଚନ ବା ସାଧାରଣ କଳା ଭାଷାରେ ମାନବ ଆକୃତିର ବିଘଟନ, ସେମାନଙ୍କୁ ଅମାନବୀୟ କରଣ, ଅରହସ୍ୟାବୃତ୍ତକରଣ ବା ସେମାନଙ୍କର ଐଶ୍ୱରୀୟ କରଣ (ଶରୀର ଏବଂ ଅଶରୀର) ଏକ ଆତ୍ମ ପରିଚୟ ଦିଗରେ ଗତିଶୀଳ କରେଇଥାଏ, ଯାହାକି ରୂପର ମହାସମୁଦ୍ରରେ ଏକ ଜୀନ୍‌ପରି । ଗ୍ରନ୍ଥୀମୋଚନ ସାଧାରଣତଃ ଏକ ସଂଗୋପିତ ତଥ୍ୟ ମଧ୍ୟକୁ ପ୍ରବେଶ ଏବଂ ଏହାର ଏକ ସମାନ୍ତରାଳ ଅର୍ଥ ହେଉଛି ସୃଜନଶୀଳ ଶିଳ୍ପୀର ଏକ ଚିତ୍ରଭାଷାର ନିଜସ୍ୱ ସଂକେତ ପାଇଁ ଅନ୍ୱେଷା । ଏହି ସଂକେତ ଶିଳ୍ପୀ ପାଇଁ ଏକ କଲମ, ଶୈଳୀ ବା ଦସ୍ତଖତ ଭାବରେ କାର୍ଯ୍ୟ କରିଥାଏ। ଏହି ସ୍ୱାକ୍ଷରଗୁଡ଼ିକ ଜେନେଟିକ୍ ଆର୍ଟର ଡ଼ି.ଏନ୍.ଏ, ଯାହାକି ଏକ ଚିତ୍ରାୟିତ ବ୍ୟକ୍ତିତ୍ୱ ନିର୍ମାଣର ନିୟାମକ ଏହି ସ୍ୱାକ୍ଷରର ବିରୋଧାଭାଷ ଭଳି ଏହି ବ୍ୟକ୍ତିଗତ ଚିତ୍ର ସଂକେତ ସର୍ବଦା ପରିବର୍ତ୍ତିତ ହୋଇ ଚାଲିଥାଏ ନୂତନ ସୌନ୍ଦର୍ଯ୍ୟବୋଧର ଆହ୍ୱାନ ସହିତ ।

ଯେତେବେଳେ ଚିତ୍ରଶିଳ୍ପୀ ବୟସ୍କ ହୋଇଯାଏ, ଉଦାହରଣସ୍ୱରୂପ ଷାଠିଏ ବର୍ଷ ବୟସ୍କ ହୋଇଯାଏ, ନିଜର ଜୈବିକ ପଦାର୍ଥର ଅବକ୍ଷୟ ଘଟିଥାଏ ଏବଂ ଶୈଳ୍ପୀକ ଅନ୍ୱେଷଣ ଏକ ସାମାଜିକ ଭିତ୍ତିଭୂମି ଉପରେ ଦାନାବାନ୍ଧି ଜୀବନ ଓ ଜୀବୀକିଷାର ଉର୍ଦ୍ଧ୍ୱକୁ ଯାଇ ଏକ ବିପରୀତମୁଖୀ ସଂକେତର ଗ୍ରନ୍ଥୀମୋଚନ ନିଜର ଜୀବନ ଓ କଳାଦୃଷ୍ଟି ମଧ୍ୟରେ କରିଥାଏ । ଏହା ଆତ୍ମଜ୍ଞାନକୁ ପରିପୁଷ୍ଟ କରିଥାଏ, ଶରୀର ଏବଂ ଆତ୍ମାର

ହେତୁ ବୁଝିବାର ପରିବେଶ ସୃଷ୍ଟି କରେ, ଯାହାକି କଳାନ୍ୱେଷଣର ମୂଳଭିତ୍ତି । ଏହି ଅନ୍ୱେଷଣ ବା ଆତ୍ମାନୁସନ୍ଧାନ ବାହ୍ୟ ଭାବରେ ଏକ କାନଭାସ୍, ରଙ୍ଗ, ମାଟି, ପଥର ଧାତୁ ବା ଅନ୍ୟାନ୍ୟ ବସ୍ତୁ ଉପରେ ନ୍ୟସ୍ତ ହୋଇଥାଏ ଏବଂ ପରିଶେଷରେ ତାହା ଗତିପଥ ବଦଳେଇ ଅନ୍ତର୍ଗତ ହୋଇ ସଂଗତି, ସନ୍ତୁଳନ, ସୌନ୍ଦର୍ଯ୍ୟ, ଦୃଷ୍ଟିଭଙ୍ଗୀ ଏବଂ ବ୍ୟକ୍ତ ହେବାକୁ ଅଙ୍ଗୀକାର କରିଥାଏ । ଏହିଠାରେ ଗୋଟିଏ ଶିଳ୍ପୀର ଯାତ୍ରା ସାକାର ହୁଏ ଶରୀରର ଗ୍ରନ୍ଥୀମୋଚନରେ - ଆତ୍ମାନ୍ୱେଷଣରେ - ଯାହାକି ସୃଜନଶୀଳ କଳା ।

ଚନ୍ଦ୍ରଶେଖର ସର୍ବତୋଭାବେ ଏହି ଶରୀର-ଆତ୍ମା କଳାସଂସ୍ଥିତି ବ୍ୟବସାୟରେ ବ୍ୟାପୃତ ଏବଂ ତିନି ଦଶକ ଧରି ଏକ ପ୍ରତିକୂଳ ପରିବେଶରେ ସାମାନ୍ୟାନୁଦାନ ବା ଅନୁଦାନରହିତ ଗବେଷଣାରେ ମଗ୍ନ ଏକ ବ୍ୟକ୍ତିଗତ ଅନଗ୍ରସରତା ଓ ମାନବୀୟ ଲାଜ ସହିତ । ତାଙ୍କର ଆଦ୍ୟ ସଂପ୍ରୀତି 'ଶରୀର-ସୌନ୍ଦର୍ଯ୍ୟ' ସହିତ ଯାହାକି ତାଙ୍କୁ 'ପୁନରୁଜ୍ଜୀବନ'ର ସମ୍ମୋହନରେ ବାନ୍ଧି ଦେଇଥିଲା । ଏହି ଅଣଜାତୀୟବାଦ-ପ୍ରାଚ୍ୟ ଅଣଓଡ଼ିଆ କଳା ଶୈଳୀର ମୁଖପାତ୍ର ଥିଲେ ଖଲ୍ଲିକୋଟ ବାହାରେ ଶିଳ୍ପୀ ବିମ୍ବାଧର ବର୍ମା ଓ ଗୌରାଙ୍ଗ ଚରଣ ସୋମ ଏବଂ ରବିନାରାୟଣ ନାୟକ ଖଲ୍ଲିକୋଟ କଳା ବିଦ୍ୟାଳୟ ମଧ୍ୟରେ । ଏହି ବିଧାର ଶିଳ୍ପୀ ନଥିଲେ ଅଜିତ୍ କେଶରୀ ରାୟ ଯେ କି ଇଣ୍ଡିଆନ ପେଣ୍ଟିଂ ବିଭାଗରେ ଶିକ୍ଷକ ଥିଲେ ଏବଂ ଚନ୍ଦ୍ରଶେଖର ଥିଲେ ତାଙ୍କ ଛାତ୍ର । ଏହି 'ପୁନରୁଜ୍ଜୀବନ'ର ପ୍ରବକ୍ତାମାନେ ସ୍ୱଳ୍ପ ଜ୍ଞାତ ହୋଇଥିଲେ ଯେ ଏହି ବିଧାଟି ମହାସ୍ରୋତରୁ ଲୀନ ହୋଇଗଲାଣି ଏବଂ ଏହାର ପ୍ରଚଳନ, ଏହାର ଉତ୍ପତ୍ତିସ୍ଥଳ ଶାନ୍ତି ନିକେତନରେ ଆଉ ହେଉନାହିଁ । ଖଲ୍ଲିକୋଟରେ ଅଙ୍ଗୀକୃତ ହୋଇଥିବା 'ପୁନ୍‌ରୁଜ୍ଜୀବନ'ର ଐନ୍ଦ୍ରଜାଲିକତା ଯୋଗୁ ଏହାର ଥିଲେ ସମ୍ମୋହିତ ଗ୍ରହୀତା ଏବଂ ସ୍ରଷ୍ଟାମାନଙ୍କର ଏକ ଆତ୍ମମୋହ ଯୋଗୁ ନିଜର ଦୃଷ୍ଟିଭଙ୍ଗୀରେ ଥିଲା କିଛି ଅସ୍ୱଚ୍ଛତା, ଯାହାକି ଥିଲା ସମୟର ଆବଶ୍ୟକତା, ଯାହାକି ପରିବର୍ତ୍ତନକୁ ପରିହାର କରିଥିଲା, ତାହା ସେମାନଙ୍କର ଜ୍ଞାନବୋଧ ଓ ପ୍ରଗତିର ପରିପନ୍ଥୀ ଥିଲା । 'ପୁନରୁଜ୍ଜୀବନ' ଆନ୍ଦୋଳନକୁ ଏହାର ଅବଦାନ କଥା ମୁଁ ଅସ୍ୱୀକାର କରୁନାହିଁ । କିନ୍ତୁ ସମଗ୍ର ଦେଶରେ ଆଧୁନିକତାର ଉଦ୍ଭବ ଏବଂ ଓଡ଼ିଶା ଭଳି ଏକ ମହାନ୍ କଳା ପରମ୍ପରା ସମୃଦ୍ଧ ରାଜ୍ୟରେ ତାହାର ପ୍ରୟୋଗ କେମିତି ଅପ୍ରାସଙ୍ଗିକ ନୁହେଁ କି? ସେମାନଙ୍କର କୋଷବଦ୍ଧ ଦୃଷ୍ଟିଭଙ୍ଗୀ ମୁକ୍ତ ଚିନ୍ତନକୁ ପରିହାର କରି ୟୁରୋପୀୟ ବିପ୍ଳବାତ୍ମକ ଆନ୍ଦୋଳନକୁ ଅଙ୍ଗୀକାର କରିବା ଏକ ନିରୂପିତ ପରିବେଶକୁ ଆତ୍ମସ୍ଥ କରିବା ପରି । ଏହାଥିଲା ଓଡ଼ିଶାର ପ୍ରଥମ 'ପୁନରୁଜ୍ଜୀବନ' ଆନ୍ଦୋଳନର ପ୍ରଥମ ଭାଗ । ମୁଁ ୧୯୬୨ ମସିହାରେ ଦକ୍ଷିଣ ଭାରତୀୟ ଷଣ୍ଢ ନୃତ୍ୟକୁ ନେଇ ଏକ ପେଣ୍ଟିଂ ଚନ୍ଦ୍ରଶେଖରଙ୍କ ପ୍ୟାଲେଟ୍‌ରୁ ରଙ୍ଗ ନେଇ କରିଥିଲି । ଓଡ଼ିଶାରେ 'ପୁନରୁଜ୍ଜୀବନ' ଆନ୍ଦୋଳନ ସଂପର୍କରେ

ମୋର ବା ଚନ୍ଦ୍ରଶେଖରଙ୍କର କୌଣସି ବିଶେଷ ଜ୍ଞାନ ନଥିଲା । ଏଠି ଏହା ସ୍ୱୀକାର କରୁଛି ଯେ ମୁଁ ଚନ୍ଦ୍ରଶେଖରଙ୍କର ଚିତ୍ରକଳା ଅପେକ୍ଷା ତାଙ୍କ ବନ୍ଧୁତ୍ୱ ଦ୍ୱାରା ବେଶୀ ମାତ୍ରାରେ ଆକୃଷ୍ଟ ହୋଇଥିଲି ଏବଂ ମୁଁ କିଛି ୱାସ୍ ଏବଂ ଟେମ୍ପେରା ପେଣ୍ଟିଂ କରିଥିଲି, ମୁଁ ସେଗୁଡ଼ିକର ଟାଇଟଲ୍‌କୁ ଏବେ ବି ମନେ ରଖିଛି ଓ ସେଗୁଡ଼ିକର ସଂଖ୍ୟା ମୁଁ ଆଙ୍ଗୁଠିରେ ଗଣି କହିଦେଇପାରେ । ମୋର ଯାହା ମନେ ପଡୁଚି ମୋର ଏକ ୱାସ ପେଣ୍ଟିଂ ଆମେ ଶରତ ଚନ୍ଦ୍ର ଦେବଙ୍କର ମତାମତ ପାଇଁ ତାଙ୍କୁ ଦେଖେଇଲୁ ଏବଂ ତାଙ୍କର ସହସା ପ୍ରଶ୍ନଥିଲା ଯେ ଜଣେ ଲୋକ ଝରକା ନଥିବା ଘରେ କେମିତି ଶୋଇପାରିବ? ସେ ଆମ ହାତରୁ ପେଣ୍ଟିଂଟି ଏକ ପ୍ରକାର ଝାମ୍ପିନେଇ ତାଙ୍କ ବାଥ୍‌ଟବ୍‌ରେ ବୁଡ଼େଇ ଦେଲେ ଏବଂ ନଖ ଘଷି ଗୋଟିଏ ଝରକା ତିଆରି କରିଦେଲେ । ଆମେ ଏହି ପ୍ରକାର କାର୍ଯ୍ୟପାଇଁ ମର୍ମାହତ ହୋଇ ଆମ ରୁମ୍‌କୁ ଫେରିଆସିଲୁ । ତାପରେ ମୋର ବନ୍ଧୁ ମୋତେ କହିଲେ ଯେ ଅଧ୍ୟକ୍ଷ ଯେଉଳି କଲେ ସେଭଳି ୱାସ୍ ପେଣ୍ଟିଂ ହୁଏ ନାହିଁ । ଏଠି ଏକଥାର ଅବତାରଣା ଏଇଥିପାଇଁ ପ୍ରାସଙ୍ଗିକ ଯେ ମୁଁ ୱାସ୍‌ପେଣ୍ଟିଂର ଦୁଇଟି ମୁଖ୍ୟ ଶୈଳୀର କଥା ଉପସ୍ଥାପନ କରୁଛି । ଶାନ୍ତିନିକେତନ ଶୈଳୀ କଦାପି ଏକ ସୃଜନଶୀଳ ଅଙ୍କନକୁ ତାର ମିଷ୍ଟିକାଲ୍‌ଗୁଣ ରହିତ ହେବାକୁ ଦିଏନାହିଁ କିନ୍ତୁ ଶରତ ଚନ୍ଦ୍ର ଦେବଙ୍କର ଅନ୍ୟ ଶୈଳୀଟି ଭିନ୍ନ ଉପାୟରେ ପ୍ରସ୍ତୁତ । ଚନ୍ଦ୍ରଶେଖରଙ୍କର ମଧ୍ୟ ଏକ ଅନୁରୂପ ଅଭିଜ୍ଞତା ହୋଇଥିଲା ଯେତେବେଳେ ଶରତ ଚନ୍ଦ୍ର ତାଙ୍କର 'ପ୍ରସାଧନ' ପେଣ୍ଟିଂକୁ ସାମାନ୍ୟ ବଦଳେଇବାକୁ ଚାହିଁଲେ ।

ଚନ୍ଦ୍ରଶେଖର ତାଙ୍କର ଅନ୍ୟ ବନ୍ଧୁ ଓ ଶିକ୍ଷକମାନଙ୍କ ଭଳି ଏହା ଜାଣିଥିଲେ ଯେ ଗୋଟିଏ ୱାସ୍ ପେଣ୍ଟିଂକୁ କିଭଳି ଫିକାରଙ୍ଗ ଦେଇ ସମଗ୍ର କାଗଜ ପୃଷ୍ଠରେ ଏକ କୁହୁଡ଼ିର ଆସ୍ତରଣ ସୃଷ୍ଟିକରି ମଧ୍ୟସ୍ଥଳରେ ଏକ ସ୍ଥାନରେ କିଛି ବର୍ଣ୍ଣ ଔଜ୍ଜ୍ୱଲ୍ୟ ସୃଷ୍ଟିକରିବା, ଯାହାକି ଏକ କେନ୍ଦ୍ରବିନ୍ଦୁ ରୂପେ ଉଦ୍‌ଭାସିତ ହୋଇଥାଏ ଓ ଆନନ୍ଦକୁ, ବେଦନାକୁ ବା ରୋମାଣ୍ଟିକ ଚେତନାକୁ । ଏହି ୱାସ୍ ପେଣ୍ଟିଂଗୁଡ଼ିକ ବାସ୍ତବବାଦରୁ ଅନେକ ଦୂରରେ ଥାଇ ଏକ ସ୍ୱପ୍ନମୟ ପରିବେଶ ସୃଷ୍ଟି କରୁଥିଲା । ମୋର ମନେପଡୁଛି ଚନ୍ଦ୍ରଶେଖରଙ୍କର ଏକ ୱାସ୍ ପେଣ୍ଟିଂ 'ଲକ୍ଷ୍ମୀ ପୁରାଣ ଦି ବାନିଶ୍‌ମେଣ୍ଟ ଅଫ୍ ଲକ୍ଷ୍ମୀ'ରେ ଜଗନ୍ନାଥ ସିଂହାସନରେ ବସିଛନ୍ତି, ଲଜ୍ଜା ଏବଂ ଅପମାନରେ ତାଙ୍କ ମଥାନତ, ଲକ୍ଷ୍ମୀଙ୍କୁ ବାହାରିଯିବାକୁ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି, ପାଖରେ ବଳଭଦ୍ର ଠିଆ ହୋଇଛନ୍ତି କ'ଣ ଘଟୁଛି ବୋଲି ଆଶ୍ଚର୍ଯ୍ୟ ଦୃଷ୍ଟିପାତ କରି ।

୧୯୬୧ ମସିହାରେ ଲଳିତକଳା ଏକାଡ଼େମୀ ଆୟୋଜିତ ନିଖିଳ ଉତ୍କଳ ଚାରୁକଳା ପ୍ରଦର୍ଶନୀ ପାଇଁ ଅଙ୍କିତ ଟେମ୍ପେରା 'ମୀରା ଡ୍ରିକିଂ ପଏଜନ୍' ପାଇଁ ଚନ୍ଦ୍ରଶେଖରଙ୍କୁ ପ୍ରଥମ ସ୍ୱୀକୃତି ମିଳେ । ଯଦିଓ ଚନ୍ଦ୍ରଶେଖର ଜଣେ 'ପୁନରୁଜ୍ଜୀବନକାରୀ'

(ରିଭାଇଭଲିଷ୍ଟି) ଥିଲେ ତଥାପି ତାଙ୍କର ଶୈଳୀ ଥିଲା ଭିନ୍ନ। ତାଙ୍କ ଚିତ୍ରର ଆଙ୍ଗୁଳିଗୁଡ଼ିକ ସାମାନ୍ୟ ଦୀର୍ଘ ଏବଂ ବେଦନା ବିଧୂର । ଏହି ଦିଗ ପରିବର୍ତ୍ତନରେ ଶରତ ଚନ୍ଦ୍ର ଦେବଙ୍କର ଶୈଳୀ ସହିତ ଏକ ମାନସିକ ସଂପୃକ୍ତି ଥିଲା । ଯାହାକି ସଂପୂର୍ଣ୍ଣ ନଥିଲା ଏବଂ ଥିଲା କିଛି ସାମୟିକ ଅନୁକରଣ । ପରବର୍ତ୍ତୀ କାଳରେ ତାହା ସ୍ୱଭାବଶତଃ ଅପସରି ଯାଇଥିଲା ।

ଏହି 'ପୁନରୁଜ୍ଜୀବନକାରୀ'ମାନେ ଦୁଇଭାଗରେ ବିଭକ୍ତ ଥିଲେ; ବାହାର ହଷ୍ଟେଲ୍ କଟକୀ ଶୈଳୀ ଓ ଭିତର ହଷ୍ଟେଲ ଗଞ୍ଜାମୀ ଶୈଳୀ । ଯଦିଓ ଏହି ବିଭାଗୀକରଣ ଅଯୌକ୍ତିକ ଥିଲା ତଥାପି ଏହା ଅଙ୍ଗୀକୃତ ଥିଲା । ଚନ୍ଦ୍ର ଶେଖରଙ୍କ ସହିତ ଏହି ଭିତର ହଷ୍ଟେଲ ଶୈଳୀରେ ଲକ୍ଷ୍ମୀନାରାୟଣ ସାହୁ ଓ ଦେବରାଜ ସାହୁ ଇତ୍ୟାଦି ଥିଲେ । ସେମାନେ ମୋତେ ସର୍ବଦା ସେମାନଙ୍କର ଗୋଷ୍ଠୀଭୁକ୍ତ କରିବାକୁ ଚେଷ୍ଟା କରୁଥିଲେ କାରଣ ମୁଁ ଅଧକ୍ଷ ଶରତ ଚନ୍ଦ୍ର ଦେବଙ୍କର ପ୍ରଶଂସକ ଥିଲି । ମୁଁ ଥିଲି ରଙ୍ଗମୟ ଏବଂ ଅଭିବ୍ୟକ୍ତିବାଦୀ ତେଣୁ ମୁଁ ତାଙ୍କ ଗୋଷ୍ଠୀରେ ଧରାଦେଲି ନାହିଁ । ଚନ୍ଦ୍ରଶେଖରଙ୍କ ସଂଗୋଷ୍ଠୀରେ ମୁଁ ଆଙ୍କିଥିବା ଶେଷ ଟେମ୍ପେରା ସଂପ୍ରତି ଶିବବାଳା ଯୋଗୀ ଆଶ୍ରମ, ଡ଼େରାଡୁନ୍‌ରେ ସଂଗୃହୀତ । ସେ ସମୟରେ ଖଲ୍ଲିକୋଟ ବହୁ ବିବାଦର କେନ୍ଦ୍ରବିନ୍ଦୁ ହୋଇପଡ଼ିଥିଲା । ଦଳଗତ ବିବାଦ ଓ ଅନୁଷ୍ଠାନକୁ ଭୁବନେଶ୍ୱରକୁ ସ୍ଥାନାନ୍ତର ପାଇଁ ଆନ୍ଦୋଳନ ଦାନା ବାନ୍ଧୁଥିଲା । କେବଳ କିଛି ଯୁବ ସୁଲଭ ଉଦ୍ଦାମତା ଓ ଶିଶୁ ସୁଲଭ ଚପଳତା ସହିତ ସେମାନେ କଳାରେ ବୃତ୍ତିଗତ ଦକ୍ଷତାର ପ୍ରଶ୍ନ ଉତ୍‌ଥାପନ କରୁଥିଲେ, ଯାହାକି ଖୁବ୍ ସ୍ୱାସ୍ଥ୍ୟକର ଥିଲା । ମୋର ମନେପଡୁଛି ଲକ୍ଷ୍ମୀନାରାୟଣ ସାହୁ ସକାଳୁ ଝାଡ଼ାଗଲାବେଳେ ଇନର ହଷ୍ଟେଲରେ ପୂର୍ବଦିନ ହୋଇଥିବା ପେଣ୍ଟିଂ ବିଷୟରେ ପର୍ଯ୍ୟାଲୋଚନା କରନ୍ତି । ସଂଧ୍ୟାରେ ଇନର୍ ହଷ୍ଟେଲ୍‌ର କିଛି ଅନ୍ତେବାସୀ ଓ ଲକ୍ଷ୍ମୀନାରାୟଣ ସାହୁ ମିଶି ଆଉଟର ହଷ୍ଟେଲରେ ହୋଇଥିବା ଟେମ୍ପେରା ଓ ୱାସ୍ ଦେଖନ୍ତି ଓ ଏକ ତୁଳନାତ୍ମକ ବିଚାର କରନ୍ତି । ଖଲ୍ଲିକୋଟ ବଜାର ବୁଲା ଶେଷ ହେଲେ ସଂଧ୍ୟାରେ ପେଣ୍ଟିଂ ବିଷୟରେ ଗୁରୁତର ଆଲୋଚନା ହୁଏ । ଫଳରେ ଖଲ୍ଲିକୋଟ 'ପୁନରୁଜ୍ଜୀବନକାରୀ' ଦଳଙ୍କର ଉତ୍‌ଥାନ ଶାନ୍ତିନିକେତନର ଆମ୍ରବିଥିକା ହୋଇ ଖଲ୍ଲିକୋଟର ପର୍ବତଶ୍ରେଣୀ ମଧ୍ୟରେ ବିଲୀନ ହୋଇଯାଏ । ସଂକ୍ଷେପରେ କହିଲେ ଏହାର ଏକ ସଂକ୍ଷିପ୍ତ ପଦଯାତ୍ରା ଯାହାକି ରବିନାରାୟଣଙ୍କ କ୍ୱାଟର, ଶରତ ଦେବଙ୍କର ଆପାର୍ଟମେଣ୍ଟ ଓ ଅଜିତ୍ କେଶରୀଙ୍କର ଫ୍ଲାଟ ମଧ୍ୟରେ ସୀମାବଦ୍ଧ ଥିଲା ।

ଦିନେ ଦିନେ ସଂଧ୍ୟାରେ ଚନ୍ଦ୍ରଶେଖର ଏବଂ ତାଙ୍କର ଅନ୍ୟବନ୍ଧୁମାନେ ଇନର ହଷ୍ଟେଲ୍‌ର ବାରଣ୍ଡାକୁ ଆସି ସେମାନଙ୍କର ପେଣ୍ଟିଂର ପରାକାଷ୍ଠା ପ୍ରଦର୍ଶନ କରୁଥିଲେ । ଏହା ଏକ ଅପୂର୍ବ ଦୃଶ୍ୟ ଯେଉଁଠିକି ଉଭୟ ଛାତ୍ର ଓ ଶିକ୍ଷକଙ୍କର ଚିତ୍ରକଳା ଅପୂର୍ବ ରଙ୍ଗ

ବିନ୍ୟାସରେ ପ୍ରଦର୍ଶିତ ହେଉଥିଲା । ସେଠାରେ କାଲ୍‌କାଟା ଏକାଡ଼େମୀକ ସ୍କୁଲ୍, ଶାନ୍ତିନିକେତନ ରିଭାଇଭାଲିଷ୍ଟ ସ୍କୁଲ ଏବଂ ସଦ୍ୟ ଜନ୍ମ ନେଇଥିବା ଓଡ଼ିଶୀ ଆଧୁନିକ କ୍ୟୁବିଷ୍ଟ, ସର୍‌ରିଅଲିଷ୍ଟିକ୍ ଓ ଏକ୍‌ସ୍‌ପ୍ରେସନିଷ୍ଟିକ ଶୈଳୀ ସ୍ଥାନୀୟ କବି, ରଚନାକାରୀମାନଙ୍କ ବକ୍ତବ୍ୟରେ ଅଧିକ ରସାଳ ହେଉଉଠୁଥିଲା । ଏହି କଳା ସଂଗୋଷ୍ଠୀରେ ଚନ୍ଦ୍ରଶେଖରଙ୍କ ରୋଷେଇ ଘରେ ପ୍ରସ୍ତୁତ ହୋଇ ଆସୁଥିଲା ମସଲାଦାର ଗରମ ଗରମ ରାନ୍ଧଣା । ଚନ୍ଦ୍ରଶେଖର ମଧ୍ୟ ଜଣେ ସୁରାନ୍ଧଣା ଶିଳ୍ପୀ । ଏହିଭଳି ଏକ ପରିବେଶରେ ଖଲ୍ଲିକୋଟ କଳାବିଦ୍ୟାଳୟରେ ଚାରିବର୍ଷ କଟେଇଲେ ଚନ୍ଦ୍ରଶେଖର ।

ଖଲ୍ଲିକୋଟ କଳା ବିଦ୍ୟାଳୟରୁ କଳାଶିକ୍ଷା ସମାପ୍ତ କଲାପରେ ଚନ୍ଦ୍ରଶେଖର ଭାରତ ସରକାରଙ୍କର ଜନଗଣନା ବିଭାଗ, କଟକ ଠାରେ ଜଣେ ଶିଳ୍ପୀଭାବରେ ଯୋଗ ଦିଅନ୍ତି । ସେ ଗ୍ରାମ୍ୟ ଓ ଆଦିବାସୀ ପରମ୍ପରାରେ ଚିତ୍ର ଅଙ୍କନ କରନ୍ତି । ଏହି ସ୍କେଚ୍‌ଗୁଡ଼ିକ ପାଇଁ ସେ ଭାରତ ସରକାରଙ୍କର ସ୍ୱରାଷ୍ଟ୍ର ମନ୍ତ୍ରାଳୟ ଦ୍ୱାରା ପୁରସ୍କୃତ ହୁଅନ୍ତି । ତାଙ୍କର କ୍ୟାରିୟରର ପ୍ରାରମ୍ଭରେ ଏହି ଘଟଣା ତାଙ୍କୁ ଅସମ୍ଭବ ଭାବରେ ମାନସିକ ଶକ୍ତି ପ୍ରଦାନ କରେ । ଏଠି ସ୍ୱଳ୍ପକାଳ ରହଣୀ ପରେ ସେ ଏହାକୁ ଛାଡ଼ି ପୁନର୍ବାର ସ୍ୱଳ୍ପକାଳ ପାଇଁ ବ୍ୟୁରେ ଅଫ୍ ଷ୍ଟାଟଷ୍ଟିକ୍ସ ଆଣ୍ଡ ଇକନମିକ୍‌ସରେ ଯୋଗ ଦିଅନ୍ତି । ତା'ପରେ ଏସବୁ ଛାଡ଼ି ୬ଷ୍ଠ ଦଶକର ମଧ୍ୟଭାଗରେ ଆସ୍କାଠାରେ ଏକ ସ୍ୱତନ୍ତ୍ର, ଜର୍ମାନୀ ସହାୟତାରେ ସ୍ଥାପିତ ଶିଳ୍ପ-ଆବାସିକ ବିଦ୍ୟାଳୟ 'ହାୟର ସେକେଣ୍ଡାରୀ ସ୍କୁଲ ଅଫ୍ ସାଇନ୍ସ ଏଣ୍ଡ ଟେକ୍ନୋଲୋଜି' ରେ ଯୋଗ ଦିଅନ୍ତି । ଚନ୍ଦ୍ରଶେଖରଙ୍କ ବିଶାଳ ପରିବାର ମଧ୍ୟରେ ପାଞ୍ଚ ଭଉଣୀ ଓ ଦୁଇଭାଇ । ଆସ୍କା ବିଦ୍ୟାଳୟରେ ଯୋଗଦେବାକୁ ଗଲାବେଳକୁ ତାଙ୍କର ତିନି ଭଉଣୀ ଓ ଜଣେ ଭାଇ ଖୁବ୍ କମ୍ ବୟସରୁ ମୃତ୍ୟୁ ମୁଖରେ ପଡ଼ିଥାନ୍ତି । ଏଠାରେ ଚନ୍ଦ୍ରଶେଖରଙ୍କ ଶିଳ୍ପୀମାନସର ଏକ ନାରୀ ସୁଲଭ ପରିବେଶରେ ଅଭିବୃଦ୍ଧି ହୋଇ ସତେଜତା, ପ୍ରେରଣା, ନାଟକୀୟ ମନୋଭାବ ଏବଂ ଧୈର୍ଯ୍ୟର ବିଭାବମାନଙ୍କୁ ଆତ୍ମସ୍ଥ କରିବାରେ ସକ୍ଷମ ହେଲା । ସେ କଦାଚ ପଶ୍ଚାଦ ଅଭିମୁଖୀ ନ ହୋଇ ତାଙ୍କ ଉପରେ ଥିବା ପାରିବାରିକ ବୋଝକୁ ଭ୍ରୂକ୍ଷେପ ନକରି ସେ ତାଙ୍କର କଳାଦୃଷ୍ଟି ସହିତ ଅଗ୍ରଗାମୀ ହେଲେ । ବରଂ ଚିତ୍ରକଳା ପାଇଁ ତାଙ୍କର ଉତ୍ସାହ ଅଧିକରୁ ଅଧିକ ମାତ୍ରାରେ ବୃଦ୍ଧିପାଇଲା । ଅଧିକରୁ ଅଧିକ ଟେମ୍ପେରା, ୱାସ ଏବଂ ରେଖାଚିତ୍ର ସୃଷ୍ଟିହୋଇ ତାଙ୍କ ଶୈଳୀରେ ଏକ ବିବର୍ତ୍ତନବାଦର ସୂଚନା ଦେଖାଦେଲା । ଏଠାରେ ଚନ୍ଦ୍ରଶେଖର ତାଙ୍କର ବୈଦେଶିକ ସଂପର୍କକୁ ଫଳବତୀ କରେଇବାରେ ସକ୍ଷମ ହେଲେ। ବିଦ୍ୟାଳୟରେ ଥିବା ତାଙ୍କର ଜର୍ମାନୀ ସହକର୍ମୀ ତାଙ୍କ ସୃଜନକର୍ମ ବିଷୟରେ ଅବଗତ ହୋଇ ତାଙ୍କଠାରୁ କିଛି ପେଣ୍ଟିଂ କ୍ରୟ କଲେ।

ପାରିବାରିକ କୋଷବଦ୍ଧତାରୁ ମୁକୁଳିଲା ପରେ ହିଁ ଚନ୍ଦ୍ରଶେଖରଙ୍କର ପ୍ରକୃତ ଶିଳ୍ପୀ ବ୍ୟକ୍ତିତ୍ୱ ପ୍ରସ୍ଫୁଟିତ ହେଲା । ଯେଉଁ ଅଦୃଶ୍ୟ ଶକ୍ତି ତାଙ୍କୁ ପରିବାର ମନସ୍କ କରିଥିଲା ଧୀରେ ଧୀରେ ଶିଥିଳ ହୋଇପଡ଼ିଲା ଏବଂ ତାଙ୍କର ଶିଳ୍ପୀ ମନସ୍କ ମନ ମୁକ୍ତି ଖୋଜିଲା । ସେତେବେଳକୁ ଚନ୍ଦ୍ରଶେଖର ବିବାହ ହୋଇସାରିଥିଲା ଏବଂ କନ୍ୟା ଗୀତା ଜନ୍ମ ନେଇସାରିଥିଲା । ପରିବର୍ତ୍ତୀ କାଳରେ ଗୀତା ପିତାଙ୍କ ପଦାଙ୍କ ଅନୁସରଣ କରି ଜଣେ ଚିତ୍ରଶିଳ୍ପୀ ହୋଇପାରିଲା । ଏପରିକି ତାଙ୍କ ବଡ଼ ପୁଅ ତାରା ଜଣେ ଭାସ୍କର ହେବା ପାଇଁ ପ୍ରଚେଷ୍ଟାରତ ରହିଥିଲା ।

ଚନ୍ଦ୍ରଶେଖର ଭୁବନେଶ୍ୱର ଆସିଲେ ହାଣ୍ଡିକ୍ରାଫ୍‌ଟସ୍ ଡ଼ିଜାଇନିଂ ସେଣ୍ଟରରେ ଜଣେ ଡ଼ିଜାଇନ୍‌ର ଭାବରେ ଯୋଗଦେବା ପାଇଁ । ଭୁବନେଶ୍ୱର ସହରୀ ସଭ୍ୟତାକୁ ଅଙ୍ଗୀକାର କରିଥିବା ଏକ ସ୍ଥାନ ହୋଇଥିବାରୁ ତାଙ୍କ ମା' ଓ ପତ୍ନୀ ଭାଗ୍ୟ କ୍ଷୀର, ଦହି ଓ ପନିପରିବାର ନିମ୍ନମାନ ଉପରେ ବୀତସ୍ପୃହ ହେବାଟା ସ୍ୱାଭାବିକ । ଆସ୍କାର ପନିପରିବା ସବୁ ସଦ୍ୟ ଥିଲା ଏବଂ କୁକୁଡ଼ା ପାଳି ପ୍ରତିଦିନ ଅଣ୍ଡା ଖାଇବା ପାଇଁ ସେଠାରେ ଥିଲା ବହୁ ଯାଗା । ଅଚୀରେ ଏହି ବିଡ଼ମ୍ବନା ଦୂର ହୋଇଯାଇଥିଲା ଏବଂ ସେ ନିଜର ସୃଜନ ଜଗତର ପରିଧିରେ ରହି ନିଜର ଶ୍ରେଷ୍ଠ ସୃଜନଶୀଳ ସୃଷ୍ଟିରେ ସମକାଳୀନ କଳାଜଗତକୁ ପରିପୁଷ୍ଟ କରି ଚାଲିଲେ । ଓ୍ୟାର୍କିଂ ଆର୍ଟିଷ୍ଟସ୍ ଆସୋସିଏସନ ତାଙ୍କୁ ଏକ ସୁଦୃଢ଼ ଭିତ୍ତିଭୂମି ପ୍ରଦାନ କଲା ଓ ସେ ସବୁ ସଂପର୍କର ସେତୁକୁ ଦୃଢ଼ କରିନେଲେ । ଏଇଠି ତାଙ୍କ ସହିତ ଯୋଗଦେଲେ ସମକାଳର ଅନ୍ୟଜଣେ ସୃଜନମନସ୍କ ଶିଳ୍ପୀ ଯେ କି ଚନ୍ଦ୍ରଶେଖରଙ୍କ କଳା ସମସ୍ୟାର ବିଶ୍ୱସ୍ତ ଏବଂ ସମବେଦନା ଉଦ୍ରେକକାରୀ । ଏହା ମଧ୍ୟରେ ତାଙ୍କର ପ୍ରାକ୍ତନ ଛାତ୍ର ରାମହରି ଜେନା ଅଶୀ ଦଶକରେ ଲଳିତକଳା ଏକାଡ଼େମୀର ଆଞ୍ଚଳିକ କେନ୍ଦ୍ରର ଗ୍ରାଫିକ୍ ଷ୍ଟୁଡ଼ିଓରେ ଯୋଗଦେଲେ । ତାଙ୍କର ଗୁରୁମାନେ ଯଥା ଅଜିତ୍ କେଶରୀ ରାୟ ଓ ଅନନ୍ତ ପଣ୍ଡା ମଧ୍ୟ ନିକଟରେ ଅବସ୍ଥାପିତ ହୋଇଥିଲେ । ବର୍ତ୍ତମାନ ବୃତ୍ତଟି ସଂପୂର୍ଣ୍ଣ ହେଲା ଏବଂ ସେ ହେଲେ ସଂପୂର୍ଣ୍ଣ ଚିନ୍ତାଶୂନ୍ୟ ଓ ସ୍ଥିତପ୍ରଜ୍ଞ । ତାଙ୍କର ଚିତ୍ରକଳାରେ ଦେଖାଦେଲା ସମ୍ଭାବନା ଏବଂ ସ୍ୱୀକୃତି ଅଜାଡ଼ି ହୋଇପଡ଼ିଲା ।

ସେ ଏହି ପ୍ରଥମ ଥର ପାଇଁ ଭୁବନେଶ୍ୱର ଆସିନଥିଲେ । ସେ ବ୍ୟୁରୋ ଅଫ୍ ଷ୍ଟାଟିଷ୍ଟିକ୍ସରେ ଚିତ୍ରଶିଳ୍ପୀ ଥିଲା ବେଳେ ଭୁବନେଶ୍ୱରରେ ରହୁଥିଲେ। ଆମେ ୟୁନିଟ୍ ନାଇନ୍‌ରେ ଗୋଟିଏ ଭଡ଼ା କ୍ୱାଟରରେ ରହୁଥିଲୁ । ମୁଁ ଓଡ଼ିଶା ସେକ୍ରେଟାରୀଏଟ୍‌ର ଯୋଜନା ଓ ସମନ୍ୱୟ ବିଭାଗରେ କାମ କରୁଥାଏ । ତାହା ଆମ ଉଭୟଙ୍କ ପାଇଁ ଥିଲା ବିଡ଼ମ୍ବିତ ସମୟଭିତରେ ରୋଜଗାର, ଚିତ୍ରକାରିତା ଓ ପାଠପଢ଼ା । ଆମେ ବିଜେବି ସାଂଧ୍ୟ ମହାବିଦ୍ୟାଳୟରେ ପାଠ ପଢୁଥିଲୁ । ସେ ଅସୀମ ବସୁଙ୍କର ପ୍ରଦର୍ଶନୀ ଦଳର

ଜଣେ ଧରାବନ୍ଧା ସଭ୍ୟ ଥିଲେ । ଯେତେବେଳେ କୌଣସି ପ୍ରଦର୍ଶନୀ ଆସୁଥିଲା ଚନ୍ଦ୍ରଶେଖରଙ୍କୁ ଆସ୍କାରୁ ମୁରାଲ ପେଣ୍ଟିଂ ପାଇଁ ଡ଼କରା ଆସୁଥିଲା । ତାଙ୍କର ବିଶାଳ ମୁରାଲ ସବୁ ଓଡ଼ିଶା ମଣ୍ଡପମାନଙ୍କରେ ସ୍ଥାନିତ ହୋଇ ତାଙ୍କୁ ଅନେକ ପ୍ରଶଂସା ଆଣିଦେଲା । ଯଦିଓ ଏଗୁଡ଼ିକ ସଂପୂର୍ଣ୍ଣ ଓଡ଼ିଶୀ ଶୈଳୀର ହେଉ ନଥିଲା ତଥାପି ତାହା ସରକାରୀ ମଣ୍ଡପମାନଙ୍କରେ ଅତି ସୁନ୍ଦର ଭାବରେ ସ୍ଥାନିତ ହୋଇ ସାଂସ୍କୃତିକ ପରିବେଶ ସୃଷ୍ଟି କରୁଥିଲା । ଏହି ସମୟର ମୁରାଲଗୁଡ଼ିକ ଏବେ ଓଡ଼ିଶା ରାଜ୍ୟ ସଚ୍ଚିବାଳୟରେ ସ୍ଥାନିତ ହୋଇଛି । ତାଙ୍କର ଦିଲ୍ଲୀଯାତ୍ରା ତାଙ୍କୁ ଜୟପୁର ହାଉସ୍‌ରେ ଥିବା ନାସନାଲ ଗ୍ୟାଲେରୀ ଅଫ୍ ମଡ଼ର୍ଣ୍ଣ ଆର୍ଟ ଏବଂ ପ୍ରଗତି ମଇଦାନରେ ଅବସ୍ଥାପିତ କ୍ରାଫଟ୍‌ସ ମ୍ୟୁଜିୟମରେ ଥିବା କଳାକୃତି ସହିତ ଚାକ୍ଷୁସ ପରିଚୟ ଘଟିଲା ଏବଂ ତାଙ୍କ ସୃଜନଶୀଳ ମନ ଉପରେ ଏହା ବିଦ୍ୟୁତ ପ୍ରଭାବ ପକେଇଲା, ଯାହା ଫଳରେ କି ତାଙ୍କ ଭିତରେ ଥିବା ସୁପ୍ତ ଉତ୍ସାହ ନୂତନ ଶୈଳୀର ରୂପ ନେଲା ।

ଭୁବନେଶ୍ୱରରେ ସେ ଏକ ଭିନ୍ନ କଳାମନସ୍କ ଶିଳ୍ପୀର ପରିଚୟ ପ୍ରଦାନ କଲେ । ଟସର ଉପରେ ସେ ସ୍ୱତଃସ୍ଫୂର୍ତ୍ତ ରଙ୍ଗ ମହୋତ୍ସବ ସୃଷ୍ଟି କରିବାରେ ସକ୍ଷମ ହେଲେ । ଆମେ ଭୁବନେଶ୍ୱରରେ ପରସ୍ପରକୁ ସବୁବେଳେ ସାକ୍ଷାତ କରୁଥିଲେ ମଧ୍ୟ ସେ ତାଙ୍କର ପରିବାର ପେଣ୍ଟିଂ ଓ ହାଣ୍ଡିକ୍ରାଫ୍‌ଟସ୍‌ର ଚାକିରୀକୁ ନେଇ ବ୍ୟସ୍ତ ଥିଲେ ଓ ମୁଁ ରାଜ୍ୟ ପର୍ଯ୍ୟଟନ ବିକାଶ ନିଗମକୁ ନେଇ । ମୁଁ ଚିତ୍ରକଳା, ଗବେଷଣା ଏବଂ ହୋଟେଲ, ମୋଟେଲ୍ ଓ ଗୁଡ଼ାଏ କାର୍‌କୁ ନେଇ କର୍ମରତ ଥିଲି ଯାହା ଗୋଟିଏ ଶିଳ୍ପୀ ପକ୍ଷରେ ବନ୍ଧୁର ପଦଯାତ୍ରା ।

ସ୍ୱିଡେନ୍ ଓ ରୁଷିଆରେ ଅନୁଷ୍ଠିତ ହେବାକୁ ଥିବା ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆର ଆନ୍ତର୍ଜାତିକ ପ୍ରଦର୍ଶନୀ ପାଇଁ ମୁଁ ଭିଜୁଆଲାଇଜର ନିଯୁକ୍ତ ହୋଇଥିଲି ଏବଂ ଚନ୍ଦ୍ରଶେଖର ଏହାର ପ୍ରସ୍ତୁତି ପାଇଁ ମୋର ସହଯୋଗୀ ନିଯୁକ୍ତ ହୋଇଥିଲେ । ଏହା ମୋ ପାଇଁ, ତାଙ୍କ ପାଇଁ ଏବଂ ସମକାଳୀନ କଳା ଆନ୍ଦୋଳନ ପାଇଁ ଏକ ମହାର୍ଘ ଘଟଣା ଥିଲା । ପ୍ରଦର୍ଶନୀର ଥିମ୍ ଥିଲା 'ଭାରତର ଜନପ୍ରିୟ କଳା' । ଯଦିଓ ସେ ଆଗରୁ ମ୍ୟୁରାଲ ଆଙ୍କିବାରେ ଅଭିଜ୍ଞ ଥିଲେ ତଥାପି ଗୋଷ୍ଠୀଗତ ଭାବରେ ଗୋଟିଏ ବାସ୍ତବବାଦୀ କଳା ବିଧାକୁ ପରିବର୍ଦ୍ଧିତ କରି ଗୋଟିଏ ଆନ୍ତର୍ଜାତିକ ପ୍ରଦର୍ଶନୀରେ ସ୍ଥାନିତ କରିବା ତାଙ୍କ ପକ୍ଷରେ ଏକ ଦୁରୂହ ବ୍ୟାପାର ଥିଲା । ଏହି ପ୍ରଦର୍ଶନୀର ଏକ ବଳିଷ୍ଠ ପ୍ରଭାବ ରହିଥିଲା କାରଣ ଏକ ଭାରତୀୟ ଦୃଷ୍ଟିଭଙ୍ଗୀକୁ ଜନପ୍ରିୟ ବର୍ଣ୍ଣନାତ୍ମକ ଢ଼ଙ୍ଗରେ ଉପସ୍ଥାପିତ କରିବା ପାଇଁ ଏଥିରେ ପଥ ସୃଷ୍ଟି କରାଯାଇଥିଲା । ଏଥିରୁ ଯେଉଁ ଆତ୍ମ ବିଶ୍ୱାସ ସୃଷ୍ଟି ହେଲା । ତାକୁ ପାଥେୟ କରି ଚନ୍ଦ୍ରଶେଖର ରଙ୍ଗ ସଂରଚନାରେ ମାତି ଉଠିଲେ ରଙ୍ଗର ସନ୍ତୁଳିତ

ବ୍ୟବହାରକୁ ପରିହାର କଲେ । ଏହି ଫେଷ୍ଟିଭାଲ୍ ଅଫ୍ ଇଣ୍ଡିଆ ମୋ ପାଇଁ ନୂତନ ବାତାୟନ ଉନ୍ମୋଚିତ କଲା ଯାହାକି ଏକ ନୂତନ ଜଗତର ଦୃଷ୍ଟିଭଙ୍ଗୀ ଆଣିଦେଲା ଏବଂ ମତେ ଶିକ୍ଷାଦେଲା ସାଧାରଣ କଳା ବିଭାବମାନଙ୍କୁ କିଭଳି ଆନ୍ତର୍ଜାତିକତା ପ୍ରଦାନ କରାଯାଇପାରେ।

୧୯୮୧ ମସିହାରେ ଓଡ଼ିଶା ପର୍ଯ୍ୟଟନ ବିକାଶ ନିଗମ ଆୟୋଜିତ 'ଚିତ୍ରବାରମାସୀ' ପ୍ରଦର୍ଶନୀରେ ତାଙ୍କର ଏକକ ପ୍ରଦର୍ଶନୀ ତାଙ୍କ ପାଇଁ ଥିଲା ଏକ ସ୍ମରଣୀୟ ଘଟଣା । ଏହାପୂର୍ବରୁ ସେ ୧୯୭୨ ମସିହାରେ ଦୁଇଟି ଏକକ ଚିତ୍ର ପ୍ରଦର୍ଶନୀ ଭୁବନେଶ୍ୱରଠାରେ ରାଜ୍ୟ ଲଳିତ କଳା ଏକାଡ଼େମୀ ଓ ଶିଳ୍ପ ନିର୍ଦ୍ଦେଶାଳୟ ବ୍ରହ୍ମପୁର ପ୍ରାୟୋଜନରେ ଅନୁଷ୍ଠିତ କରିସାରିଥାନ୍ତି । ଏହି ପ୍ରଦର୍ଶନୀଗୁଡ଼ିକରେ ତାଙ୍କ ଛାତ୍ରଜୀବନର ଛବି ଓ ଆସ୍କା ରହଣୀ କାଳର ଛବି ସବୁ ସ୍ଥାନ ପାଇଥିଲା । ଏଥିରେ ମୁଖ୍ୟତଃ ଇନର ହଷ୍ଟେଲ ଷ୍ଟାଇଲ୍‌ର ପେଣ୍ଟିଂ ସବୁ ସ୍ଥାନିତ ହୋଇଥିଲା । ଯେଉଁଥିରେ କି ଏକ ଚିତ୍ରଭାଷାରେ ଉତ୍ତରଣ ବ୍ୟାହତ ହୋଇଥିଲା । ଏହା ପ୍ରତିଭାତ ହେଉଥିଲା ଯେ ସେ ଏହି 'ପୁନରୁଜ୍ଜୀବନ'ର ଗଣ୍ଡି ମଧ୍ୟରେ ରହି ଏକ ଚିତ୍ରଭାଷ୍ୟରେ ଅନ୍ୱେଷଣରେ ଥିଲେ ଯାହାକି ସମୟର ଆବଶ୍ୟକତା ଥିଲା । ଚିତ୍ର ବାରମାସୀ ତାଙ୍କ ସୃଜନଯାତ୍ରା ପଥରେ ଏକ ଜଳଉତ୍ସ ପରି ଥିଲା, ଯାହାକି ତାଙ୍କ ପରିବର୍ତ୍ତନ ଓ ପ୍ରାପ୍ତିକୁ ବୁଝିବାକୁ ଏକ ମାଧ୍ୟମ ଥିଲା । ଓଟିଡିସିର ପ୍ରାୟୋଜନରେ ଅନୁଷ୍ଠିତ ତାଙ୍କର ଏହି ୩ୟ ଏକକ ଚିତ୍ରକଳା ପ୍ରଦର୍ଶନୀର ଆଧାର ଥିଲା କୃଷ୍ଣଲୀଳା - ନୀଳ ଶରୀର ଭଗବାନଙ୍କର ବିଭିନ୍ନ ଲୀଳାର ସମାହାର । ଏଥିରେ ସ୍ଥାନିତ ହୋଇଥିବା ପେଣ୍ଟିଂର ବିଶେଷତ୍ୱ ଥିଲା ଏହାର ନମନୀୟ ମୁକ୍ତିକାମୀ ଗୁଣ । ନୀଳରଙ୍ଗ ଫିକା ନୀଳରୁ ପରିବର୍ତ୍ତିତ ହୋଇ ଗାଢ଼ ନୀଳରେ ରୂପାୟିତ ହୁଏ, ସିନ୍ଦୁର ରଙ୍ଗ ଅଧିକ ସ୍ଥାନ ଅଧିକାର କରେ ଏବଂ ହଳଦୀବର୍ଣ୍ଣ ଉଜ୍ଜ୍ୱଳ ହୋଇ ରାଧାଙ୍କ ଶରୀରକୁ ଆଚ୍ଛାଦନ କରିଥାଏ । ଓଡ଼ିଶାର ତାଳପତ୍ର ଚିତ୍ରଭଳି ଗଛର ପତ୍ରଗୁଡ଼ିକ ତରଙ୍ଗାୟିତ ଏବଂ ମୁଖର । ତଥାପି ରଙ୍ଗର ପ୍ରାବଲ୍ୟ ନାହିଁ ସବୁ ସନ୍ତୁଳିତ ଏବଂ ଲଜ୍ଜାବନତ । ଓଟିଡ଼ିସି ଏକ କଳାଧଳା ପ୍ରଚାର ପୁସ୍ତିକା ପ୍ରକାଶ କରିଥିଲେ କାରଣ ରଙ୍ଗୀନ ଛାପା ସେତେବେଳେ ସ୍ୱପ୍ନ ଥିଲା ଏବଂ ମୋର ଉପକ୍ରମଣିକାରେ ମୁଁ ଗୋପାଳକୃଷ୍ଣ, ବନମାଳୀ ଓ କବିସୂର୍ଯ୍ୟ ବଳଦେବଙ୍କ ମଧ୍ୟଯୁଗୀୟ ରଚନାରୁ କିଛି ଉଦ୍ଧୃତି ସ୍ଥାନିତ କରିଥିଲି । ଚନ୍ଦ୍ରଶେଖରଙ୍କର ପେଣ୍ଟିଂ ସବୁଥିଲା ସାହିତ୍ୟିକ ବିମ୍ବମାନଙ୍କର ଏକ ଦୃଷ୍ଟି-ଦର୍ଶନ । ଏହି ପ୍ରଦର୍ଶନୀ କାବ୍ୟ ଓ ଦୃଶ୍ୟର ଏକ ଚମତ୍କାର ସମନ୍ୱୟ ଥିଲା ଯାହାକି କବିର ଶୃଙ୍ଗାରୀଭାବ ଓ କଳାଦୃଷ୍ଟି ଏକତ୍ର ସହାବସ୍ଥାନ କରିଥିଲା। ତାଙ୍କର ପେଣ୍ଟିଂଗୁଡ଼ିକ ସବୁବେଳେ ହୃଦୟଗ୍ରାହୀ ଥିଲା ଏବଂ ତାହା କ୍ରମଶଃ ଫିଗରଗୁଡ଼ିକ ବିଶାଳତା ଓ ଧୀଶକ୍ତିକୁ

ଅଙ୍ଗୀକାର କରିବାକୁ ଲାଗିଲେ । ଏହି ପେଣ୍ଟିଂଗୁଡ଼ିକ ଜୀବନାୟନରେ ଭରପୁର ଏବଂ ଯେ କୌଣସି ସମୟରେ ଫିଗରଗୁଡ଼ିକ ନୃତ୍ୟ ଗୀତରେ ରତ ହୋଇପାରନ୍ତି।

ଚନ୍ଦ୍ରଶେଖରଙ୍କର ପୁରସ୍କାର ଓ ସମ୍ମାନର ସୀମା ନାହିଁ । ତାଙ୍କ ସୃଜନଶୀଳତା ପାଇଁ ଅନେକ ପୁଷ୍ପଗୁଚ୍ଛ । ଭାରତର ପ୍ରତ୍ୟେକ କଳା ସଂସ୍ଥା ତାଙ୍କୁ ପୁରସ୍କୃତ କରିଛି । ଏକାଡ଼େମୀ ଅଫ୍ ଫାଇନ୍ ଆର୍ଟସ୍, କଲିକତା, ଅଲ୍ ଇଣ୍ଡିଆ ଫାଇନ୍ ଆର୍ଟ ଆଣ୍ଡ କ୍ରାଫ୍ଟସ୍ ସୋସାଇଟି, ନୂଆଦିଲ୍ଲୀ, ବମ୍ବେ ଆର୍ଟ ସୋସାଇଟି, ମୁମ୍ବାଇ, ରାଜ୍ୟ ଲଳିତ କଳା ଏକାଡ଼େମୀ ସମେତ ଅନ୍ୟ ଅନୁଷ୍ଠାନ ଏହି ପୁରସ୍କାର ମାନ ପ୍ରଦାନ କରିଛନ୍ତି । ସମସାମୟିକମାନଙ୍କ ଭଳି ଚନ୍ଦ୍ରଶେଖର ରାଓ ହେଉଛନ୍ତି ଜଣେ ଆଲଙ୍କାରିକ ଶିଳ୍ପୀ। ଏହା ପାରମ୍ପରିକ ହେଉ କିମ୍ବା ଆଧୁନିକ ହେଉ ଓଡ଼ିଶାର ଚିତ୍ରକଳା ସବୁବେଳେ ଫିଗର ପେଣ୍ଟିଂକୁ ଅଙ୍ଗୀକାର କରିଆସିଛି । ତାଙ୍କର ଫିଗର ସବୁ ମାଟି ମନସ୍କ, କ୍ୟୁବିକ ଅନୁରକ୍ତି, ହୁସେନୀୟ ଘୋଡ଼ା ଓ ଷଣ୍ଢ, କେଟୀୟ ବର୍ତ୍ତୁଳ ସ୍ତନ ଏବଂ ଯାମିନୀ ରାୟଙ୍କ ସରଳତାରେ ସମୃଦ୍ଧ । ତାଙ୍କର ଭଙ୍ଗୀ ମନ୍ଦିର ଗାତ୍ରରେ ଥିବା ଓଡ଼ିଶୀ ନୃତ୍ୟ ଭଙ୍ଗୀମାରୁ ଆନୀତ, ଯାହାକି ଶୃଙ୍ଗାରୀ, ଲଜ୍ଜାଶୀଳା ଏବଂ କାମନା ଜର୍ଜ୍ଜରୀତ । ୧୯୩୦ ମସିହା ବେଳକୁ ଭାରତରେ ଘନବାଦକୁ ଭାରତୀୟ ସ୍ଥାପତ୍ୟ କଳା ସହିତ ଏକ ସମ୍ମିଶ୍ରଣ କରିବା ପାଇଁ ଉଦ୍ୟମ ଆରମ୍ଭ ହୋଇଥିଲା । ଚନ୍ଦ୍ର ଶେଖର ରାଓ ତାଙ୍କ ତୂଳୀ ଧରି ତାଙ୍କ ଫିଗରର କପାଳ ଚିତ୍ରଣରୁ ହିଁ ଆରମ୍ଭ କରି ବର୍ତ୍ତୁଳ ଉରଜଶ୍ରେଣୀ ଅଙ୍କନ ପରେ ଜଳ ମାଠିଆ ପରି ନିତମ୍ବ ଅଙ୍କନ କରନ୍ତି, ଯାହାକି ଅତ୍ୟନ୍ତ ବର୍ତ୍ତୁଳ ଏବଂ ରସଘନ, ଯାହାକି ଦର୍ଶକ ହୃଦୟରେ କିଛି ପ୍ରେମିକଭାବ ଉଦ୍ରେକ କରେ । ତାଙ୍କର ମୃଦୁ ଫର୍ମ ସହିତ ନୃତ୍ୟ କରେ, ଗୀତ ଗାଏ ଏବଂ ତାଙ୍କର ଶରୀରରେ ବେପଥୁ ଆସେ ରେଖାର ପ୍ରବହମାନତାରେ । ରେଖାକୁ ପ୍ରାଣ ଦେଇ ଧରି ରଖିବା ଏକ ଭାରତୀୟ କଳା ପରମ୍ପରା ଏବଂ ଏହା କାଗଜ ଉପରେ ନିଜର ସ୍ୱତଃସ୍ଫୁର୍ତ୍ତିତା ଯୋଗୁ ଘଟିଥାଏ । ଶିଳ୍ପୀର ହାତ ଖାଲି ଅନୁସରଣ କରିଥାଏ ମାତ୍ର । ଏହା ପ୍ରଣିଧାନଯୋଗ୍ୟ ଯେ ଏହା ତାଙ୍କ ପେଣ୍ଟିଂର ମହନୀୟତା ଯାହା ଗୀତିମୟ ରୈଖିକ ସଂପର୍କ ପରମ୍ପରା ଓ ଆଧୁନିକତା ମଧ୍ୟରେ ସୃଷ୍ଟି କରିଥାଏ । କିନ୍ତୁ ଏଥିରେ ବିଡ଼ମ୍ବନାର କଥାଟି ଏହାଯେ ଯଦି ରୈଖିକ ଅଲଙ୍କରଣର ମାନସିକତା ଏଥିରେ ନଥାଏ ।

ଚନ୍ଦ୍ର ଶେଖରଙ୍କ ଶୈଳୀ ତାଙ୍କ ସ୍ୱାକ୍ଷର ଭଳି ନିଜସ୍ୱ । ସେ ଅତ୍ୟନ୍ତ ସଫଳତାର ସହିତ ପଶ୍ଚିମଭାରତୀୟ ଚିତ୍ରକଳାରୁ ପୋଟଳ ଚିରା ଆଖି, ଆନ୍ଧ୍ର ପ୍ରଦେଶର ଲେପାକ୍ଷୀ ମୁରାଲରୁ ପାଦମୁଦ୍ରା ଏବଂ ସାମଗ୍ରିକଭାବେ ଓଡ଼ିଶାର ପାରମ୍ପରିକ ଚିତ୍ରକଳାରୁ ଉପାଦେୟ ଅଂଶ ନିଜ ପେଣ୍ଟିଂ ପାଇଁ ଗ୍ରହଣ କରିଥିଲେ । ସେ ଘନବାଦୀ ଚିନ୍ତାଧାରାକୁ ଏଥିରେ ଅବତଳ ଓ ଉତ୍ତଳ ରୈଖିକ ଢ଼ଙ୍ଗରେ ରଙ୍ଗ ସହିତ ଉପସ୍ଥାପିତ କରିଛନ୍ତି । ତାଙ୍କର

ଚିତ୍ରଭାଷାର ବିଧାମାନ ଅବିଚ୍ଛିନ୍ନତା, ରୁଚି ସମ୍ପନ୍ନତା ଏବଂ ପରମ୍ପରା ଓ ଆଧୁନିକତାର ସମ୍ମିଶ୍ରଣକୁ ହିଁ ଆଧାର କରିଥାଏ । ତାଙ୍କ ଶୈଳୀର ମାଧୁରୀମା ଓ ବ୍ୟାବହାରିକତା ତାଙ୍କୁ ଜଣେ ଜନପ୍ରିୟ ଶିଳ୍ପୀର ମାନ୍ୟତା ଦେଇଥାଏ । ତାଙ୍କ ଶୈଳୀର ପ୍ରଭାବ ତାଙ୍କର କିଛି କନିଷ୍ଠ ସମକାଳୀନ ଶିଳ୍ପୀ ଗଣେଶ୍ୱର ବାରିକ, ଗୌରାଙ୍ଗ ବାରିକ ଏବଂ ରାଜୀବ ଲୋଚନ ସାହୁ ଇତ୍ୟାଦିଙ୍କ ଉପରେ ସ୍ପଷ୍ଟ ପ୍ରତୀୟମାନ।

ମୁଁ କେନ୍ଦ୍ର ଲଳିତ କଳା ଏକାଡ଼େମୀର ସଚୀବ ଥିବା ସମୟରେ ଏକ ନୂତନ କଥା ମୋ ମସ୍ତିଷ୍କକୁ ଆସିଲା । ଏକାଡ଼େମୀ ତରଫରୁ ଏକ ପ୍ରସ୍ତାବ ଏକ କଳା ବିଦ୍ୟାଳୟ ଖୋଲିବା ପାଇଁ ଦିଆଗଲା । ଗୁରୁ ଶିଷ୍ୟ ପରମ୍ପରାକୁ ଦୃଷ୍ଟିରେ ରଖି ସେ ଆଚାର୍ଯ୍ୟ ଭାବରେ ନିଜର ଶୈଳୀକୁ ବୃହତ୍ତର ଶିଷ୍ୟ ସମାଜକୁ ଶିକ୍ଷା ଦେବେ । ସେ ସମ୍ମତି ଦେଲେ ଏବଂ ଦେଢ଼ବର୍ଷ ପର୍ଯ୍ୟନ୍ତ ଗୋଟିଏ କର୍ମଶାଳା ସଂଚାଳନ କଲେ । ଏହା ଏକ ପରୀକ୍ଷାଧର୍ମୀ ଉଦ୍ୟମ ଥିଲା ଯେଉଁଥିରେ କି ଆଧୁନିକତାର ମାପକାଠିରେ ଏକ ଶୈଳୀକୁ ମାପି ତାର ଉତ୍ତରଣ ସାଧନ କରିବା ।

ଯେଉଁ ଶୈଳୀ ଯୋଗୁ ଚନ୍ଦ୍ରଶେଖର ପ୍ରସିଦ୍ଧି ଲାଭ କଲେ, କିଛି ସମକାଳୀନ ଶିଳ୍ପୀ ତାହାର ଅନୁକରଣ କଲେ । ଭୁବନେଶ୍ୱରର ଏକ ପ୍ରସିଦ୍ଧ ହୋଟେଲ୍ କଳା ଛାତ୍ରମାନଙ୍କୁ ନେଇ ତାଙ୍କ ଚିତ୍ରର ପ୍ରତିଲିପି ଖୁବ୍ ଶସ୍ତା ଦରରେ ଅଙ୍କେଇ ନେଇ ତାଙ୍କର ହୋଟେଲ ସଜେଇଲେ । ଯେତେବେଳେ କଳା ବିଭାବ ସହଜ-ଅର୍ଥରେ ରୂପାନ୍ତରିତ ହୁଏ ସେତିକି ବେଳେ ଏହାକୁ କପି କରିବାର ମାନସିକତାଟି ସୃଷ୍ଟିହୁଏ। ଏହି କଳା ବିଧା ପାରମ୍ପରିକ ଏବଂ ଆଦିବାସୀ କଳାର ସାମାଜିକମାନଙ୍କୁ ଅଙ୍ଗୀକାର କରିଥିବାରୁ ଯାହା ପ୍ରସ୍ତୁତ ହୁଏ ତା'ର ଉପଭୋକ୍ତା ସୃଷ୍ଟି ହୁଅନ୍ତି । ଶିଳ୍ପୀ ଓ ଜନସାଧାରଣ ପରସ୍ପରକୁ ବୁଝିପାରନ୍ତି, ବିଶେଷତଃ ବସ୍ତୁଟିକୁ ବୁଝିପାରନ୍ତି ।

ଏହି ପରମ୍ପରାରେ ଭାରତରେ ଅଗ୍ରଗଣ୍ୟ ହେଉଛନ୍ତି ରବି ବର୍ମା । କିନ୍ତୁ ଚନ୍ଦ୍ରଶେଖରଙ୍କ କ୍ଷେତ୍ରରେ ଏହା ଘଟିନାହିଁ । ଭୁବନେଶ୍ୱର ଭଳି ଏକ କ୍ଷୁଦ୍ର ସ୍ଥାନରେ ଆମେ ଏହାକୁ ଏକ ଅପରାଧ ବୋଲି ଧାରଣା କରିନାହୁଁ । କିନ୍ତୁ ଜଣେ ସମର୍ପିତ ସ୍ରଷ୍ଟା ପ୍ରତି ଏହା ଏକ ଶକ୍ତ ଧକ୍କା ଯେତେବେଳେ ମୌଳିକତା ଓ ଖରାପ ରୁଚିର କଥା ଆସେ । ସମଧର୍ମୀମାନେ ଏକ ମତ ଓଡ଼ିଶା ଲିଳିତକଳା ଏକାଡ଼େମୀର ସଚୀବ 'ମୋ ପେଣ୍ଟିଂ କାହିଁକି ପିକ୍‌ଚର ପୋଷ୍ଟ କାର୍ଡ଼ରେ ଛପାଯାଉନାହିଁ, କିନ୍ତୁ ରାଓଙ୍କର ଛାପା ଯାଉଛି । ଏହା ମୋତେ ଓ ମୋର ବନ୍ଧୁ ଚନ୍ଦ୍ରଶେଖରଙ୍କୁ ବ୍ୟଥିତ କରିଥିଲା । ରାଜ୍ୟ ଲଳିତକଳା ଏକାଡ଼େମୀ ପ୍ରାୟତଃ ସମକାଳୀନ ଶିଳ୍ପୀମାନଙ୍କର ଚିତ୍ରକୁ ନେଇ ପିକ୍‌ଚର ପୋଷ୍ଟକାର୍ଡ଼ ଛାପିଛନ୍ତି ଯାହାକି ବିକ୍ରୟ ଯୋଗ୍ୟ କିନ୍ତୁ ଏକାଡ଼େମୀ ଭାବିଲେ ଯେ ମୋ ଦସ୍ତଖତର

ପେଣ୍ଟିଂ ବିକ୍ରି ହେବ ନାହିଁ । ଏହା ବିଡ଼ମ୍ବନାର କଥା ହୋଇଥିଲେ ବି ଆମକୁ ତାକୁ ନେଇ ବଞ୍ଚିବାକୁ ହେଉଥିଲା ।

ତାଙ୍କର ସୃଜନକର୍ମର ବୈଷୟିକ ନୈପୁଣ୍ୟ ବ୍ୟତୀତ ତାଙ୍କ ଚିତ୍ରକଳାରେ ଥାଏ ଏକ ରସ୍ୟବାଦୀଗୁଣ। ଓଡ଼ିଶୀ ପରମ୍ପରା, ସାହିତ୍ୟ ଏବଂ ପ୍ରଦର୍ଶନକାରୀ କଳା ବିଧାର ସମୃଦ୍ଧ ତାଙ୍କର ଚିତ୍ରକଳାରେ ରହିଛି ଏକ ଐଶ୍ୱରୀୟ ଓ ଦୈହିକ, ଗୁଣ ଯାହାକି ଖୁବ୍ ସରଳ ଓ ରହସ୍ୟବାଦ ପରିପୂର୍ଣ୍ଣ । ପ୍ରକୃତରେ ପାରମ୍ପରିକ ନ ହୋଇ ତାଙ୍କର ଚିତ୍ରସବୁ ସ୍ପଷ୍ଟବାଦୀ ଓ ସିଧା, ଯେଉଁଥିରେ କି ପରମ୍ପରା ପ୍ରତି ରହିଛି ଅନୁରକ୍ତି । ଚନ୍ଦ୍ରଶେଖରଙ୍କର ଶ୍ରେଷ୍ଠ ପ୍ରାପ୍ତି ସେତିକି ବେଳେ ହେଲା ଯେତେବେଳେ ସେ ୭ମ ଟ୍ରିନାଲେ ଇଣ୍ଡିଆ ପ୍ରଦର୍ଶନୀରେ ଭାଗ ନେଲେ । ଏହା ସମଗ୍ର ବିଶ୍ୱର ସମକାଳୀନ ଚିତ୍ରକଳାକୁ ନେଇ ଲଳିତ କଳା ଏକାଡ଼େମୀ ନୂଆଦିଲ୍ଲୀଦ୍ୱାରା ଆୟୋଜିତ ହୋଇଥିଲା, ଯେଉଁଥିରେ କି ସେ ତାଙ୍କର କ୍ୱାର୍ଟୋ ପରି ଏକ ଇନ୍‌ଷ୍ଟାଲେସନ ପ୍ରଦର୍ଶିତ କରିଥିଲେ ଯାହାର କି ବହୁତଳ ଦୃଷ୍ଟିମାନ ରହିଥିଲା । ତାଙ୍କର ସାଧାରଣ ରଙ୍ଗ ବ୍ୟବହାର ସହିତ ସେ ଛୋଟ ଛୋଟ ଦର୍ପଣ ଖଣ୍ଡ ତାଙ୍କ ପେଣ୍ଟିଂରେ ବ୍ୟବହାର କରୁଥିଲେ ଏହା ଫଳରେ ଏକ ଐନ୍ଦ୍ରଜାଲିକତା ସୃଷ୍ଟି ହୋଇପାରୁଥିଲା । ମୁଁ ଭାରତୀୟ କମିଶନରମାନଙ୍କ ମଧ୍ୟରୁ ଅନ୍ୟତମ ଥିଲି ଏବଂ ମୁଁ ଲକ୍ଷ୍ୟ କରିଛି ଯେ କିଭଳି ଦର୍ଶକମାନେ ଏହି କ୍ୱାର୍ଟୋକୁ ସଂପ୍ରୀତିର ସହିତ ଗ୍ରହଣ କରିଥିଲେ ପାରମ୍ପରିକତାକୁ ନେଇ ।

ଚନ୍ଦ୍ରଶେଖର 'ଓ୍ୱା'ର ପ୍ରଦର୍ଶନୀ ପାଇଁ ଆମ ସହିତ ଚେନାଇ, ମୁମ୍ବାଇ, କଲିକତା, ଚଣ୍ଡିଗଡ଼ ଏବଂ ଦିଲ୍ଲୀ ଯାଇ ଓଡ଼ିଶାର ସମକାଳୀନ ଚିତ୍ରକଳାର ପ୍ରଦର୍ଶନୀରେ ଭାଗ ନେଇଛନ୍ତି। ସେକେଣ୍ଡ କ୍ଲାସ୍ ସ୍ଲିପରରେ ଆମର ରେଳଯାତ୍ରା, ବେଳେ ବେଳେ ଆମେ ଗୋଟିଏ ଛୋଟ ଦଳ ହୋଇଯାଉ ତ କେବେ ଦଳଟି ବଡ଼ । କେବେ କେବେ ଆମ ଦଳରେ ଥାନ୍ତି କାଶୀନାଥ ଜେନା, ଡ଼ି. ଏନ ରାଓ, ରାମହରି ଜେନା ଓ ମୁଁ, ଆଗେ କୁଲି ଭଳି ପେଣ୍ଟିଂର ବୋଝ ବୋହିଛୁ । ଲଗେଜର ଅଧିକ ଓଜନ ପାଇଁ ଟିକେଟ କଲେକ୍ଟରକୁ ଲାଞ୍ଚ ବି ଦେଇଛୁ । ଏହି ଗ୍ରୁପ୍ ଏକଜିବିସନ୍ ସେତିକି ବେଳେ ଆନନ୍ଦଦାୟକ ହୁଏ ଯେତେବେଳେ ଆମ ପେଣ୍ଟିଂ ସବୁ ବିକ୍ରି ହୋଇଯାଏ । ବେଳେ ବେଳେ ଗୋଟିଏ ବି ବିକ୍ରି ହୁଏ ନାହିଁ । ଏହି ଗ୍ରୁପ୍ ଏକ୍‌ଜିବିସନର ବିକ୍ରିଦ୍ୱାରା ଉତ୍ସାହିତ ହୋଇ ସେ ୯୦ ଦଶକରେ ବମ୍ବେଠାରେ ଏକକ ପ୍ରଦର୍ଶନୀମାନ ଆୟୋଜନ କରନ୍ତି । ଜଣେ କଳାକାର ପାଇଁ ତା'ର ପେଣ୍ଟିଂଗୁଡ଼ିକ ତା'ର ସନ୍ତାନ ସନ୍ତତି ଭଳି, ତେଣୁ ପେଣ୍ଟିଂକୁ ଶିଳ୍ପୀଠାରୁ ନେବାଟା ଅତ୍ୟନ୍ତ କଷ୍ଟପ୍ରଦ । ଯେଉଁଠି ବଞ୍ଚିବାର ପ୍ରଶ୍ନ ସେଠି ତାହା କରିବାକୁ ହୁଏ ।

ଚନ୍ଦ୍ରଶେଖର ଜଣେ ସାବଲୀଳ ରଙ୍ଗ ବିନ୍ୟାସକାରୀ, ଜଣେ ରୈଖିକ ବିଶାରଦ ଏବଂ ଏପରି ଜଣେ ଶିଳ୍ପୀ, ଯେ ମୁକ୍ତ ଚେତନା ସହିତ ନିଜେ ପାରମ୍ପରିକ ନ ହୋଇ ପରମ୍ପରାକୁ ବହନ କରି ଚାଲିଥାନ୍ତି । ଡ଼ିଜାଇନ୍‌ର ଭାବରେ ହାଣ୍ଡିକ୍ରାଫ୍‌ଟସ୍ ଡ଼ିଜାଇନିଂ ୟୁନିଟ୍‌କୁ ସେ ନୂତନ ଶକ୍ତି ପ୍ରଦାନରେ ବ୍ରତୀ ହେଲେ। ଏକ ନୂଆ ଡ଼ିଜାଇନ୍‌କୁ ପ୍ରଶଂସା କରିବାର ମାନସିକତାଟି ଓଡ଼ିଶାରେ ବିରଳ ଏବଂ ହାଣ୍ଡିକ୍ରାଫ୍‌ଟସ୍ କ୍ଷେତ୍ରରେ ନୂଆ ଡ଼ିଜାଇନ୍ ହିଁ ଆବଶ୍ୟକ, କାରଣ ଏହାଦ୍ୱାରା ଗତାନୁଗତିକତାର ପାଶରୁ ହସ୍ତଶିଳ୍ପ ମୁକୁଳିଥାଏ । ତାଙ୍କର କର୍ମକୁଶଳତାକୁ ନବୀନତା ଦେବା ପାଇଁ ସେ ତିନୋଟି ବୃହତ ଆଲବମ୍ ପ୍ରସ୍ତୁତ କଲେ, ଯାହାକି ସହସ୍ର ସଂଖ୍ୟାରେ ପ୍ରକାଶିତ ହୋଇ କର୍ମଶାଳାମାନଙ୍କରେ ଆଦୃତ ହେଲା । ସେ ଅନେକ କର୍ମଶାଳା ଆୟୋଜନରେ ଉପସ୍ଥିତ ରହି ତାଙ୍କର ଡ଼ିଜାଇନ୍‌ର ପ୍ରୟୋଗ କରିଥିଲେ। ସେ ଡ଼ିଜାଇନ୍ ସେଣ୍ଟରର ସ୍ୱଳ୍ପ ଅର୍ଥ ମଧ୍ୟରେ ସମର୍ପିତ କର୍ମ କରିଥିଲେ । ସେ ହାଣ୍ଡିକ୍ରାଫଟସ୍ ଇନ୍‌ଷ୍ଟିଚ୍ୟୁଟର ଅଧୀକ୍ଷକ ହୋଇଯିବା ପରେ ସେହି ସେଣ୍ଟରଟି ବନ୍ଦ ହୋଇଗଲା ।

ସେ ହାଣ୍ଡିକ୍ରାଫଟସ୍ ଇନ୍‌ଷ୍ଟିଚ୍ୟୁଟର ଅଧୀକ୍ଷକ ଭାବରେ ଏହାର ପ୍ରଭୂତ ଉନ୍ନତି ସାଧନ କରିଥିଲେ । ସେ କାରୁକଳା ଶିକ୍ଷା ପଦ୍ଧତି ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ । ଛାତ୍ରମାନଙ୍କୁ ଅଧିକ ତଥ୍ୟାଶ୍ରୟୀ କରିବାକୁ ସେ ଏଠାରେ ଥିଓରୀ ଓ କାରୁକଳାର ଇତିହାସ ଶିକ୍ଷାଦାନର ବ୍ୟବସ୍ଥା କରିଥିଲେ। ମୁଁ ସେଠାରେ କେତୋଟି ଭାଷଣ ଦେଇ ଦେଖିଛି ଯେ ତାଙ୍କର ଛାତ୍ରମାନେ କେତେ ମାତ୍ରାରେ ପରିଗ୍ରହଣଶୀଳ । ସେ ତାଙ୍କର ଛାତ୍ରମାନଙ୍କୁ ଶିକ୍ଷା ଭ୍ରମଣରେ ସ୍ଥାପତ୍ୟ ମ୍ୟୁଜିୟମ ଏବଂ କାରୁକଳା କେନ୍ଦ୍ରମାନଙ୍କୁ ନେଇଯାଇ ସେମାନଙ୍କର ଜ୍ଞାନର ପରିସୀମା ବୃଦ୍ଧି କରୁଥିଲେ। ଏହାଦ୍ୱାରା ଛାତ୍ରମାନଙ୍କର କାରୁକଳା ଜଗତରେ ଦୃଷ୍ଟିକୋଣ ବଦଳୁଥିଲା । ଶିକ୍ଷାଦାନ ବ୍ୟବସ୍ଥାରେ ବହୁ ନୂତନ ବିଧିର ପ୍ରଚଳନ ହେଲା । ଏହା ଚନ୍ଦ୍ରଶେଖରଙ୍କର ସହଜାତ ଯେ ସେ ଯେଉଁଠିକି ଯାଉଥିଲେ ସେଠି ସୃଷ୍ଟିକରୁଥିଲେ ଏକ ସହାବସ୍ଥାନର ବାତାବରଣ ।

ୱାର୍କିଂ ଆଟିଷ୍ଟସ୍ ଆସୋସିଏସନର ଚେୟାରମ୍ୟାନ୍ ଭାବରେ ସେ ସବୁବେଳେ କର୍ମପ୍ରବଣ ଥିଲେ । ଏହା କେହି ବିଶ୍ୱାସ କରିବେ ନାହିଁ ଯେ ମାତ୍ର ଥରଟିଏକୁ ବାଦ ଦେଲେ ରାଜ୍ୟ ଲଳିତ କଳା ଏକାଡ଼େମୀ ଏହି ସଂସ୍ଥାରୁ କୌଣସି ପ୍ରତିନିଧିଙ୍କୁ ମନୋନୀତ କରି ନାହାନ୍ତି । କେନ୍ଦ୍ର ଲଳିତକଳା ଏକାଡ଼େମୀର ସାମାନ୍ୟ ଅନୁଦାନ, ବ୍ୟକ୍ତିଗତ ଦାନ ଓ ଗ୍ରୁପ୍ ଏକ୍‌ଜିବିସନରେ ପେଣ୍ଟିଂ ବିକ୍ରୟ କମିଶନରେ ଏହା ମୁଖ୍ୟତଃ କାର୍ଯ୍ୟକ୍ଷମ । ଚନ୍ଦ୍ରଶେଖର ଓ୍ୱା ଗୋଷ୍ଠୀ ଏବଂ ଅନୁଷ୍ଠାନ ପ୍ରତି ସର୍ବଦା ଥିଲେ ସମର୍ପିତ । ସର୍ବଦା ତାଙ୍କ

ମୁଖ ଉଜ୍ଜ୍ୱଳି ଉଠୁଥିଲା । ଯେତେବେଳେ ସେ ସାଧାରଣ ସଭାମାନଙ୍କରେ ସଂସ୍ଥା ବିଷୟରେ ଓ ସଂସ୍ଥାର ସୁଦୂରପ୍ରସାରୀ କାର୍ଯ୍ୟକ୍ରମ ବିଷୟରେ ଉପସ୍ଥାପନ କରୁଥିଲେ ।

ମୁଁ ଆନନ୍ଦିତ ଯେ ଓ୍ୱା ତାଙ୍କର ୬୦ ତମ ଜନ୍ମ ଦିବସରେ ଏକ ରଙ୍ଗୀନ ମନୋଗ୍ରାଫ ପ୍ରକାଶନରେ ନିଷ୍ପତ୍ତି ନେଇଛି, ଯେଉଁ ସଂସ୍ଥାର କି ସେ ଅଧ୍ୟକ୍ଷ । ଏହା ଶିଳ୍ପୀକୁଳ ପାଇଁ ଏକ ମହାର୍ଘ ଘଟଣା । ଏହା ଏକ ପରମ୍ପରା । ମୁଁ ଗୁରୁତ୍ୱର ସହିତ କହିପାରେ ଯେ ଓ୍ୱା ତା'ର ଚେୟାରମ୍ୟାନଙ୍କ ପାଇଁ ଓଡ଼ିଶାରେ ଏକ ଗତିଶୀଳତା ସୃଷ୍ଟିକରୁ, କାରଣ ସେ ଚେୟାରମ୍ୟାନ ବୋଲି ନୁହେଁ - ସେ ଜଣେ ଶିଳ୍ପୀ ତାହା ତାଙ୍କର ପ୍ରାପ୍ୟ ବୋଲି । ମୁଁ ଏହି ଉପୋଦଘାତ ରଚନା କରି ନିଜକୁ ଗର୍ବିତ ମନେ କରୁଛି କାରଣ ଏହି ମନୋଗ୍ରାଫ୍‌ର ପ୍ରଚ୍ଛଦରେ ଥିବା ତାଙ୍କର ପେଣ୍ଟିଂଟି କେନ୍ଦ୍ର ଲଳିତ କଳା ରିପ୍ରୋଡ଼କ୍‌ସନ ସିରିଜ୍‌ରେ ଛପା ହେବାର ଥିଲା କିନ୍ତୁ ମୋର କାର୍ଯ୍ୟକାଳ ସଚୀବ ହିସାବରେ ଶେଷ ହେବା ପରେ ସେ ଉଦ୍ୟମ ମଉଳି ଯାଉଥିଲା ।

ପାଦଟୀକା : ଡଃ ଦିନନାଥ ପାଠୀଙ୍କର ଏହି ଅନୁପମ ରଚନାଟି CHANDRASEKHAR RAO, Life & Work ରେ ପ୍ରକାଶିତ ହୋଇଥିଲା। ଏହି ପ୍ରକାଶନଟି ଶିଳ୍ପୀଙ୍କର ୬୦ ତମ ଜନ୍ମ ଶତବାର୍ଷିକୀରେ 'ଓ୍ୱା' ଦ୍ୱାରା ପ୍ରକାଶିତ।

ଓଡ଼ିଆ ଅନୁବାଦ : ସୁରେଶ ବଳବନ୍ତରାୟ



N. Chandrasekhar Rao
EB - 762
Badagada BRIT Colony
Bhubaneswar-751010

ଦିନନାଥଙ୍କ ପାଖକୁ ଲେଖିଥିବା ଚନ୍ଦ୍ରଶେଖରଙ୍କ ହାତଲେଖା ଚିଠି । ଗୀତା ଓ ପ୍ରଦୋଷର ବିବାହ ଉପଲକ୍ଷେ ଦିନନାଥ ଦିଲ୍ଲୀରୁ ଆସି ପହଞ୍ଚିଥିଲେ ଓ କନ୍ୟାଦାନ କରିଥିଲେ । କେନ୍ଦ୍ର ଲଳିତକଳା ଏକାଡ଼େମୀରେ ସଚିବ ଥିବାବେଳେ ଡକ୍ଟର ଦିନନାଥ ପାଠୀ ଜାତୀୟ ଏକାଡ଼େମୀ ପୁରସ୍କାର ପାଉଥିବା ଶିଳ୍ପୀମାନଙ୍କୁ ଓଡ଼ିଶାର କାରିଗର ମାନଙ୍କ ଦ୍ୱାରା ତିଆରି କାଠ ଖୋଦେଇ ସିଂହର ପ୍ରତୀକ ମଧ୍ୟ ପ୍ରଦାନ କରିବା ପରମ୍ପରା ସୃଷ୍ଟି କରିଥିଲେ । ଚନ୍ଦ୍ରଶେଖର ସିଂହ ଖୋଦେଇରେ ସାହାଯ୍ୟ କରିଥିଲେ ।

## Ajit Keshari Ray
## In Memoriam

Words fail to express my deep anguish on learning about the sad demise of artist Chandrasekhar Rao. He was my first favourite student, when I was the Lecturer in Painting in the Government School of Art and Crafts, Khallikote.

He was the most talented artist with very original style of his own. He was thoroughly dedicated to his profession and he was used to draw his inspiration from the traditional paintings of Orissa. He was most unassumingly self-effacing and had endeared himself to all his friends and admirers. He bore no malice or hatred to anyone. He was the student of Indian Painting under me for five years. He proved to be very talented and absolutely dedicated.

After passing out from the Art School he joined as designer under the Government and later on promoted to the post of Superintendent. During his short life span of sixty three years he had participated in state and national exhibitions and own more than thirty awards and was honoured several times.

When I heard about his illness I went to see him in Kalinga Hospital in Bhubaneswar a few days before his death. His wife, his two daughters and two artists, Dr. Dinanath Pathy and Sri Ramahari Jena, I and my wife stayed with him for half an hour, consoled him and his family members. He was suffering from cancer of the lungs. So death was inevitable.

I earnestly prey that his soul may rest in peace.

Former Principal
Khallikote School of Art



## B. N. Goswamy
## Condolence Message

Among the many regrets that one gathers in one's life, mine is that I was neither able to spend much time with Sri Chandrasekhar Rao, nor to write on his work. To say that I feel poorly about this is to greatly understate what I feel at this sad moment.

I started admiring Chandrasekhar Rao's work from the first moment that I set eyes upon it: this was a long time ago, when he was still in good health and came to Chandigarh for showing his work at the Museum of Fine Arts of the Punjab University. One could see that there was great energy in his work, and innovation. He straddled two different worlds: those of tradition and modernity, and was constantly working upon whittling down distances between them, building bridges. In the process he turned out some remarkable work.

Chandrasekhar Rao will be missed; greatly missed. Not only by his family and close friends, but also by those who live in the world of art. But he will also be remembered: with fondness and respect.

Professor Emeritus
Panjab University
Chandigarh



